# ବିଚ୍ଛନ୍ଦ-ସ୍ମରଣିକା

ସମ୍ପାଦକ

**ଶ୍ରୀ ମୁରାରିମୋହନ ଜେନା**

ପ୍ରକାଶକ
ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର
ବାଙ୍କାବଜାର, କଟକ

ପ୍ରଥମ-ବାର୍ଷିକ ଶ୍ରାଦ୍ଧଦିବସ
ମାଘ, କୃଷ୍ଣ-ଦ୍ୱାଦଶୀ—ସନ୍ ୧୩୭୯

ପ୍ରଥମ ସଂସ୍କରଣ—୧୯୭୨
ମୂଲ୍ୟ ପାଞ୍ଚଟଙ୍କା

ମୁଦ୍ରାକର
ପଣ୍ଡିତ ଅନସୂୟା ପ୍ରସାଦ ପାଠକ
ରାଷ୍ଟ୍ରଭାଷା ସମବାୟ ପ୍ରେସ
କଟକ-୧

# ସୂଚୀପତ୍ର

# ପ୍ରକାଶକଙ୍କ କଲମରୁ

ପୁରାତନ ଓଡ଼ିଆ ସାହିତ୍ୟର ଅନ୍ୟତମ ଉପାସକ ଓ ଅଗ୍ରଣୀ ସ୍ୱର୍ଗତ **ବିଚ୍ଛନ୍ଦଚରଣ ପଟ୍ଟନାୟକ**ଙ୍କର ସ୍ମରଣିକା ପ୍ରକାଶ କରିବାରେ ସୁଯୋଗ ମିଳିଥିବାରୁ ଆମ୍ଭେମାନେ ବିଶେଷ ଆନନ୍ଦିତ । 'କଳିଙ୍ଗ-ଭାରତୀ' ଓ 'ଉତ୍କଳ-ଗ୍ରନ୍ଥ-ସାହିତ୍ୟ-ସମାଜ'ର ପ୍ରତିଷ୍ଠାତା-ସଭାପତି ବିଚ୍ଛନ୍ଦଚରଣ ପଟ୍ଟନାୟକ ଥିଲେ ଜଣେ ପ୍ରତିଭାଶାଳୀ ଜାତୀୟ କବି । ତାଙ୍କର ବଳିଷ୍ଠ ଭାଷା, ଅବିକଳ୍ପ ଶବ୍ଦ-ଯୋଜନା-ଗୁମ୍ଫନ, କାରୁକଳା-ପୂର୍ଣ୍ଣ ଶୈଳୀ ଓ ବାକ୍‌ପଟୁତା ଓଡ଼ିଆ ସାହିତ୍ୟରେ ସୃଷ୍ଟି କରିଥିଲା ଏକ ସ୍ୱତନ୍ତ୍ର ଆଭିମୁଖ୍ୟ । ତାଙ୍କର ସାହିତ୍ୟିକ ସଂଗଠନ ଓ ସୃଷ୍ଟି ସ୍ୱକୀୟ ନିରଙ୍କୁଶ ମୌଳିକତା-ବଳରେ ସଂବର୍ଦ୍ଧିତ । ଅନେକେ ତାଙ୍କୁ ପୁରାତନପନ୍ଥୀ ଓ ରକ୍ଷଣଶୀଳ ବୋଲି ଆକ୍ଷେପ କରିଥାନ୍ତି; କିନ୍ତୁ ତାଙ୍କର ପ୍ରସାରୀ ପ୍ରଭାବକୁ ଅସ୍ୱୀକାର କରିବା କୌଣସି ଶିକ୍ଷିତପକ୍ଷରେ ଅସମ୍ଭବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବିଙ୍କର ପଦାଙ୍କ ଅନୁସରଣ କରି କଳିଙ୍ଗ-ଭାରତୀମାଧ୍ୟମରେ ଯେଉଁ କତିପୟ ଉଚ୍ଚଶିକ୍ଷିତ ତଥା ତରୁଣ ସାହିତ୍ୟିକ ମୁଣ୍ଡଟେକି ଉଠିଅଛନ୍ତି, ସେମାନେ ନିଶ୍ଚୟ କବିଙ୍କର ଯଶ ଓ ପ୍ରୟାସ ଅକ୍ଷୁଣ୍ଣ ରଖିବେ—ଏଥିରେ ସନ୍ଦେହର ଅବକାଶ ନାହିଁ । ଦୁନିଆରେ ବହୁ ସାଧକଙ୍କର ଅପୂର୍ଣ୍ଣ କାର୍ଯ୍ୟକୁ ପୂର୍ଣ୍ଣ କରିବାର ଗୁରୁଦାୟିତ୍ୱ ତାଙ୍କ ଦାୟାଦମାନଙ୍କ ଉପରେ ନ୍ୟସ୍ତ ହୋଇଥାଏ—ଏ କ୍ଷେତ୍ରରେ ତାହାହିଁ ହୋଇଛି । କବି ବିଚ୍ଛନ୍ଦଚରଣ ଆଜି ନାହାନ୍ତି ସତ; କିନ୍ତୁ ସ୍ୱକୀୟ ନିରଳସ ସାଧନାବଳରେ ସେ ସାହିତ୍ୟର ଯେଉଁ ସ୍ୱର୍ଣ୍ଣିମ ସଂସାର ସୃଷ୍ଟି କରିଯାଇଅଛନ୍ତି, ତାହା ଅନନ୍ୟସାଧାରଣ ।

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଲୋକୋତ୍ତର ପ୍ରତିଭାର ପୁଙ୍ଖାନୁପୁଙ୍ଖ ଆଲୋଚନା ଅଭାବରୁ ଆଧୁନିକ ଶିକ୍ଷିତ ଜନସାଧାରଣଙ୍କମଧ୍ୟରେ ତାଙ୍କ ସାହିତ୍ୟର ଆଦର ନ ଥିଲା ଓ ସମାଲୋଚକଗଣ ସେହି ରଚନାର ଅନ୍ତର୍ନିହିତ ମାଧୁର୍ଯ୍ୟପ୍ରତି ଦୃଷ୍ଟି ନ ଦେଇ କେବଳ କୁତ୍ସାରଟନା କରିବାରେ ଲାଗିଥାନ୍ତି । ଜାତୀୟ ସାହିତ୍ୟର ଏତାଦୃଶ ହତାଦର କବି ବିଚ୍ଛନ୍ଦଚରଣଙ୍କ ପ୍ରାଣରେ ଗଭୀର ଆଲୋଡ଼ନ ସୃଷ୍ଟି କଲା । "କଳିଙ୍ଗ ଭାରତୀ ଓ ଉତ୍କଳ-ଗ୍ରନ୍ଥ-ସାହିତ୍ୟ-ସମାଜ" ପକ୍ଷରୁ ଭଞ୍ଜ-ଜୟନ୍ତୀରୂପକ ସାରସ୍ୱତ ମହୋତ୍ସବର ପ୍ରବର୍ତ୍ତନଦ୍ୱାରା ସେ ଓଡ଼ିଆ-ପ୍ରାଣରେ ବଳିଷ୍ଠ ଆତ୍ମଚେତନାର ଉଦ୍ରେକ କରାଇବାଲାଗି ବଦ୍ଧପରିକର ହେଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା—ପତିତପାବନ ଶ୍ରୀଜଗନ୍ନାଥ ହେଉଛନ୍ତି ଓଡ଼ିଆ ଜାତିର ସର୍ବସ୍ୱ, ମନୋହର ଭାସ୍କର୍ଯ୍ୟବିମଣ୍ଡିତ କୋଣାର୍କ

ଓ କବିସାର୍ବଭୌମ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ତା'ର ପରିପୂର୍ଣ୍ଣ ଆତ୍ମପ୍ରକାଶ । ଏହି ମହାନ୍ ସତ୍ୟର ଉପଲବ୍ଧି ବିନା ଆମ ମାନସିକ ଦୈନ୍ୟ ଓ ଅବସାଦ ନିରାକରଣ ସମ୍ଭବ ନୁହେ । ଜୀବନର ଶେଷମୁହୂର୍ତ୍ତପର୍ଯ୍ୟନ୍ତ କବିଙ୍କର ଏହି ଧାରଣା ଅଟଳ ଥିଲା । ତାଙ୍କର ଜୀବଦ୍ଦଶାରେହିଁ ଭଞ୍ଜ-ଜୟନ୍ତୀ ଉତ୍କଳର ଗୋଟିଏ ବିଶିଷ୍ଟ ସାରସ୍ୱତ ମହୋତ୍ସବରୂପେ ପ୍ରତିଷ୍ଠା ଲାଭ କରିପାରିଅଛି ।

ବିଶେଷତଃ ଓଡ଼ିଆ କୃଷ୍ଟିର ପରମପ୍ରକାଶ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ ବହୁ ପ୍ରାଚୀନ କବିଙ୍କର ରଚନାବଳୀ ଯାହା କି କେବଳ ଲୋକମୁଖରେ ବଞ୍ଚିରହିଥିଲା, ସେଗୁଡ଼ିକ ଏକତ୍ରିତ କରି "ଶ୍ରୀଜଗନ୍ନାଥ ଜଣାଣ ଭଜନ" ନାମରେ ସେ ଯେଉଁ ଦୁର୍ଲ୍ଲଭ ଗ୍ରନ୍ଥ ସମ୍ପାଦନ କରିପାଇଛନ୍ତି, ତାହା ଜାତୀୟ ସାହିତ୍ୟ ଭଣ୍ଡାରରେ ଅମୂଲ୍ୟ ରତ୍ନରୂପେ ସ୍ଥାନ ଲାଭ କରିଛି । ଅପ୍ରକାଶିତ ଗ୍ରନ୍ଥମଧ୍ୟରୁ ବିଭିନ୍ନ ରାଗରାଗିଣୀଭରା "ତୁଳସୀ ବିନୟ ପତ୍ରିକା" ତାଙ୍କର ଅନ୍ୟତମ ଅନୁବାଦ ଗ୍ରନ୍ଥ । ପ୍ରାଣପ୍ରାଚୁର୍ଯ୍ୟଭରା ଶବ୍ଦବିନ୍ୟାସଫଳରେ ଏହା ଗୋଟିଏ ମୌଳିକ ଗ୍ରନ୍ଥତୁଲ୍ୟ ସରସ ହୋଇପାରିଛି । ଏହା ଛଡ଼ା ତାଙ୍କର ଅନ୍ୟ ଅପ୍ରକାଶିତ ଗ୍ରନ୍ଥମାନ ପ୍ରକାଶ ପାଇବାପରେ କବି ଉତ୍କଳ-ଭାରତୀଙ୍କର ଜଣେ ଶ୍ରେଷ୍ଠ ଆରାଧକରୂପେ ଖ୍ୟାତି ଲାଭ କରିବେ ।

ଆମ୍ଭେମାନେ କବିଙ୍କର ପ୍ରିୟ ଅନୁଷ୍ଠାନ 'କଳିଙ୍ଗ-ଭାରତୀ'ର ଉତ୍ତରୋତ୍ତର ଉନ୍ନତି କାମନା କରିବା ସଙ୍ଗେ ସଙ୍ଗେ ଆଶା କରୁଅଛୁ ଯେ ଏହାର ଉତ୍ସାହୀ କର୍ମିଗଣ ଉତ୍କଳ ସାରସ୍ୱତ କୃଷ୍ଟିର ପରମ୍ପରା ରକ୍ଷା କରି ପ୍ରତିଷ୍ଠାତାଙ୍କର ଚିର ଈପ୍ସିତ କାମନା ଚରିତାର୍ଥ କରିବାରେ ତତ୍ପର ହେବେ ।

---



# ମୂଳରୁ କହିରଖେ........

ପ୍ରାଚୀନ ସାହିତ୍ୟର ଦୁର୍ଭେଦ୍ୟ ଓ ଦୁର୍ଗମ୍ୟ ଗିରି ଲଙ୍ଘନରେ ପଙ୍ଗୁ ଭଞ୍ଜ ଏ ସାହିତ୍ୟର ଆଳାପ-ଆଲୋଚନାରେ ଯେଉଁ ଅଦମ୍ୟ ଉଦ୍ୟମର ସାହସିକତା ପ୍ରଦର୍ଶନ କରିଛନ୍ତି, ସେଇଥିରେ ହିଁ ସେ ସ୍ମରଣୀୟ । ସେହି ସ୍ମୃତିର ସମ୍ବଳରେ ହିଁ "ଭଞ୍ଜସ୍ମରଣିକା"ର ରୂପାନ୍ତର ମାତ୍ର; ଏହାଛଡ଼ା ଆଉ କିଛି ନୁହେଁ ।

ଭଞ୍ଜ ସାହିତ୍ୟର ସାଂଗଠନିକ ଦିଗରେ ଯେତିକି କୃତିତ୍ୱ, ସ୍ୱତନ୍ତ୍ରତା ଓ ଚମତ୍କାରିତା ପ୍ରଦର୍ଶନ କରିଛନ୍ତି, ତାହା ତାଙ୍କରି ନିଜ ସୃଷ୍ଟି ଧର୍ମରେ ସେତିକି ହୋଇପାରିନାହିଁ । ତଥାପି ସାଂଗଠନିକ ବଳିଷ୍ଠତାର ଯେଉଁ ସ୍ୱପ୍ନ ଭଞ୍ଜ ଦେଖିଥିଲେ, ସେ ସ୍ୱପ୍ନର ପ୍ରତିନିଧି ଏ ଦେଶର ପାଣିପବନ ତଥା ଜନଜୀବନର ପ୍ରଚାର ଓ ପ୍ରସାରପାଇଁ ଯେଉଁ ମୂକମାନଙ୍କୁ ବାଚାଳ କରାଇଥିଲେ, ତାଙ୍କର ଦେହାନ୍ତ ପରେ ପରେ ସେହି ବାଚାଳଗଣ ହିଁ ମୂକ ହୋଇଛନ୍ତି ଏବଂ ତାଙ୍କର ପ୍ରବର୍ତ୍ତିତ ଓ ସମର୍ଥିତ ସାଂଗଠନିକ ସଚେତନତାରେ ଏକ ଅବସ୍ଥାର ଯବନିକାର ଯେ ସୂତ୍ରପାତ ହୋଇଯାଇଛି, ଏହା ନିଃସଂକୋଚ ଓ ନିଃସନ୍ଦେହରେ ଅତି ସ୍ପଷ୍ଟଭାବେ କୁହାଯାଇପାରେ । ଏ ପରିସ୍ଥିତି ଭଞ୍ଜଙ୍କ ଆତ୍ମା ତଥା ସଂଗଠନପ୍ରତି ଅବମାନନା ହେଲେ ମଧ୍ୟ ସାହିତ୍ୟର ଅନୁଶୀଳନରେ ଭଞ୍ଜଙ୍କ ସାଂଗଠନିକତା ଯେ ସମାଲୋଚକର ଦୃଷ୍ଟିରେ ଉଦ୍ଭାସିତ ହେବ, ଏହା ନିଶ୍ଚିତ କଥା ।

ଭଞ୍ଜଙ୍କ ପ୍ରିୟ 'କଳିଙ୍ଗଭାରତୀ' ଅନୁଷ୍ଠାନରେ ଯେପରି କଳଙ୍କ ନ ଲାଗୁ, ତାହା ମୁଁ ଏହି ଅବସରରେ ସାହିତ୍ୟପ୍ରେମୀ ଜନସାଧାରଣ ଓ 'କଳିଙ୍ଗ-ଭାରତୀ'ର ଉତ୍ତର ଦାୟାଦମାନଙ୍କୁ ସତର୍କବାଣୀ ଶୁଣାଉଛି ।

ମୋର ଏହି ସ୍ମରଣିକା ଗ୍ରନ୍ଥର ପରିକଳ୍ପନାକୁ ପରିପୁଷ୍ଟ କରିବାରେ ମୋ ଦେଶର କୃତି କଳାକାର, ଲବ୍ଧପ୍ରତିଷ୍ଠ ତଥା ତରୁଣ ସାହିତ୍ୟିକ, ଗୁରୁଜନ ଓ ବନ୍ଧୁମାନେ ସହୃଦୟ ସହଯୋଗ କରିଛନ୍ତି । ସେମାନଙ୍କୁ ମୁଁ ହୃଦୟର କୃତଜ୍ଞତା ଜ୍ଞାପନ କରୁଛି ।

ବିଷ୍ଣୁଭାଷା ପୁସ୍ତକ ଭଣ୍ଡାର ତରଫରୁ ପଣ୍ଡିତ ଅନସୂୟାପ୍ରସାଦ ପାଠକ ଏହି ଗ୍ରନ୍ଥ ପ୍ରକାଶନର ଭାର ଗ୍ରହଣ କରି ଏହା ଲୋକଲୋଚନକୁ ଆଣିବାରେ ବିଶେଷ ସାହାଯ୍ୟ କରିଥିବାରୁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

**ଶ୍ରୀ ମୁରଳୀମୋହନ ଜେନା**
ସମ୍ପାଦକ, "ଭଞ୍ଜ-ସ୍ମରଣିକା"



ବିଚ୍ଛନ୍ଦ,

ତୁମେ ଚାଲିଗଲ, କିନ୍ତୁ ଓଡ଼ିଶାର ଗ୍ରନ୍ଥ-ସାହିତ୍ୟକୁ ସାହିତ୍ୟରେ ତୁମେ ଯାହା କରିବ ବୋଲି ବିଚାରିଥିଲ ତାହା ଆରମ୍ଭ କରିଛ, ଏ କଥା ମୋତେ କେତେ ଥର କହିଥିଲ । 'ନବଭାରତ' କାଗଜରେ ମଧ୍ୟ ବହୁକାଳରୁ ତୁମର ସେହି ବ୍ରତ ମୁଁ ନିଜେ ଦେଖିଥିଲି । କେତେ ଥର ମଧ୍ୟ ତୁମର ସେହି ଆଦର୍ଶର ଲେଖା 'ନବଭାରତ'ର ସମ୍ପାଦକଭାବରେ ମୁଁ ପ୍ରକାଶ କରିଛି ।

ବିଶେଷରେ ଭକ୍ତିସାହିତ୍ୟ ଓ ଓଡ଼ିଶାର ସମୁଦ୍ରକୂଳଆଡ଼େ ବାହାରିଥିବା ଅଭିଜ୍ଞସାହିତ୍ୟ ଏ ଦୁଇଟି ଧାରା ପୂର୍ଣ୍ଣରୂପେ ପ୍ରକଟିତ କରିବାର ଯେ ପ୍ରେରଣା ମୁଁ ଦେଇଥିଲି ଓ ଯାହା ତୁମେ ବଡ଼ ଆଦରରେ ଗ୍ରହଣ କରିଥିଲ, ତାହା କାର୍ଯ୍ୟରେ କେତେଦୂର କରିଛ ମୁଁ ଜାଣେ ନାହିଁ । ହେଲେହେଁ ଓଡ଼ିଶାର ଶାରଳା ଦାସଙ୍କ ପରେ ଏହି ଦୁଇଟି ଧାରାରେ ସାହିତ୍ୟର ଗତି ଆଲୋଚନା କରିବାର ପରିସର କ୍ରମେ ଫିଟିଛି ।

ତୁମେ ଆଉ କେତେ ଦିନ ବଞ୍ଚିଥାନ୍ତ, ସାହିତ୍ୟର ଏ ବିଶ୍ଳେଷଣ ପୂର୍ଣ୍ଣ କରିଥାନ୍ତ । ଶାରଳାଦାସ ଏବେ ବିଧିମତେ ପ୍ରକାଶ ପାଇନାହିଁ । ତାହେଲେ ଓଡ଼ିଆ ସାହିତ୍ୟର ଧାରା ଖୁବ୍ ବୁଝିହେବ । ତୁମର ମଧ୍ୟ ସେ କ୍ଷେତ୍ରରେ ଖୁବ୍ କାମ କରିବାର ଥିଲା । ତା ତୁମେ ପୂର୍ଣ୍ଣ କରିପାରିନାହଁ । ଭବିଷ୍ୟତର ବଂଶଧରମାନେ ସେଥିରେ ଲାଗିବେ ବୋଲି ଆଶା କରିବା ଅସ୍ୱାଭାବିକ ନୁହେଁ । ମୁଁ ସେହି ଆଶା କରି ତୁମର ମୃତ୍ୟୁର ବର୍ଷପୂର୍ତ୍ତିରେ ଏ ସ୍ମୃତିଟି ଲେଖୁଛି । ଆଶାକରେ, ଓଡ଼ିଆମାନେ ଏହା ପସନ୍ଦ କରିବେ ।

**ନୀଳକଣ୍ଠ ଦାସ**
କଟକ
ତା ୨୯ । ୧ । ୭୨

# ସ୍ୱର୍ଗତ ବିଚ୍ଛନ୍ଦଚରଣ



ବିଚ୍ଛନ୍ଦଚରଣଙ୍କୁ ମୁଁ ୧୯୪୦ ସାଲଠାରୁ ଜାଣିଥିଲି । ସେ ଜଣେ ବକ୍ତା ଓ ସାହିତ୍ୟିକ ବୋଲି ପରିଚିତ ଥିଲେ; କିନ୍ତୁ କ୍ରମେ ସେ ସାହିତ୍ୟର ଯେଉଁ ଦିଗରେ ପାରଦର୍ଶିତା ଲାଭ କଲେ, ତାହା ସେ କରିପାରିବେ ବୋଲି ମୋର ଧାରଣା ନ ଥିଲା । ନାନା ଆଲୋଚନା ଓ ସମାଲୋଚନାର ଘାତ-ପ୍ରତିଘାତରେ ଉପେନ୍ଦ୍ର ଭଞ୍ଜ ଯେ କେତେ ପଛରେ ପଡ଼ିଯାଇଥିଲେ, ଆଜି ତାହା ସହଜରେ ଅନେକେ କଳ୍ପନା କରିପାରିବେ ନାହିଁ । ଆଜି ଯେ ଉପେନ୍ଦ୍ର ଭଞ୍ଜ ସାହିତ୍ୟିକ ସଂସାରର ଆଗକୁ ଆସିପାରିଛନ୍ତି, ଏହା କେବଳ ବିଚ୍ଛନ୍ଦଚରଣଙ୍କ ସଂଗଠନ-ଶକ୍ତିଯୋଗୁଁ । ସେ ଯେ ନିଜେ କେବଳ ଭଞ୍ଜ-ସାହିତ୍ୟ ସେବି ତତ୍ପର ହେଲେ, ତାହା ନୁହେଁ; ସେ ବହୁ ଯୁବକଙ୍କୁ ସେ ଦିଗରେ ଏପରି ଅନୁପ୍ରାଣିତ କରିପାରିଲେ ଯେ ସେମାନେ ଭଞ୍ଜ-ସାହିତ୍ୟର ନିଷ୍ଠାପର ଭକ୍ତ ହୋଇ ସମାଲୋଚକମାନଙ୍କୁ ଅପଦସ୍ତ କରିଦେଲେ । ଏଇଠି ବିଚ୍ଛନ୍ଦଚରଣଙ୍କର ଦୁଇଟି ଗୁଣ ସ୍ପଷ୍ଟଭାବରେ ବିକଶିତ ହୋଇଥିଲା—ଗୋଟିଏ ହେଉଛି ସାହିତ୍ୟାଧ୍ୟୟନ ଓ ଅନ୍ୟଟି ହେଉଛି ସଂଗଠନ-ଶକ୍ତି । ଏ ଦୁଇଟି-ଯାକ ପରସ୍ପରର ପରିପୂରକଭାବରେ ଏପରି କାର୍ଯ୍ୟ କଲେ ଯେ ବିଚ୍ଛନ୍ଦଚରଣ ଆଜି ସାହିତ୍ୟ-କ୍ଷେତ୍ରରେ ଅମର ହୋଇ ରହିଲେ ।

ଉତ୍ସାହର ଆତିଶଯ୍ୟରେ ସେ ମୋଠାରୁ ଆଶା କରିଥିଲେ, ମୁଁ ଭଞ୍ଜ-ସାହିତ୍ୟର ଇଂରାଜୀ ଅନୁବାଦ କରାଇ ତାକୁ ବିଦେଶରେ ପ୍ରସାର କରାଇଥାନ୍ତି । ଭଞ୍ଜ-ସାହିତ୍ୟ ଅନୁବାଦଫଳରେ ଯେ କେତେ କ୍ଷୁଣ୍ଣ ହୋଇଯିବ, ତାହା ସେ ବୁଝିପାରୁ ନ ଥିଲେ, କାରଣ ସେ ସେଥିରେ ପୂର୍ଣ୍ଣଭାବରେ ତନ୍ମୟ ଥିଲେ । ଭଞ୍ଜ-ସାହିତ୍ୟର ବହୁ ଅଂଶ ଉଦ୍ଧାର କରି ପାଠ୍ୟପୁସ୍ତକ-ସ୍ତରକୁ ଆଣିବାର ପରିକଳ୍ପନା ମଧ୍ୟ ଥିଲା; କିନ୍ତୁ ତାହା କାର୍ଯ୍ୟରେ ପରିଣତ ହୋଇପାରି ନାହିଁ । ଏ କାର୍ଯ୍ୟଟି ଶୀଘ୍ର କରାଯିବା ଉଚିତ । ମୋର ମନେ ହୁଏ, ସେହି ହେବ ସ୍ୱର୍ଗତ ବିଚ୍ଛନ୍ଦଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧା ।

ବିଚ୍ଛନ୍ଦ-ସ୍ମରଣିକାର ଉଦ୍ୟୋକ୍ତାମାନଙ୍କୁ ମୁଁ ଅନ୍ତରର ଧନ୍ୟବାଦ ଜ୍ଞାପନ କରୁଛି । ଏହି ପ୍ରକାଶଦ୍ୱାରା ବହୁ ବ୍ୟକ୍ତିଙ୍କ ହୃଦୟରେ ଅଧ୍ୟବସାୟ, ଅଧ୍ୟୟନ ଓ ସଂଗଠନ-ଶକ୍ତି ଜାଗ୍ରତ ହେଉ—ଏହାହିଁ ମୋର ପ୍ରାର୍ଥନା ।

**ହରେକୃଷ୍ଣ ମହତାବ୍**



କଟକ
ତା ୧ । ୨ । ୬୨

ଶ୍ରଦ୍ଧେୟ ଚକ୍ରଧରବାବୁ,

ମୋର ପ୍ରଣାମ ଗ୍ରହଣ କରିବେ । ଅନେକ ଦିନରୁ ପତ୍ର ଲେଖିବି ବୋଲି ଭାବିଥିଲି । କଅଣ ଲେଖିବି, କାହିଁକି ବା ଲେଖିବି ଆଦି ନାନାରକମର ପ୍ରଶ୍ନ ମନରେ ଜାଗେ ଓ ଉଭେଇଯାଏ ।

ଆପଣଙ୍କ କଥା ନେଇ ମୋର ମନ ବାରମ୍ବାର କହେ—ଦେଖୋ କୌନ୍ ଐସା ମାଈକା ଲାଲ୍ ହୈ ଜୋ ସୋଲହ ସୋଲହ ଘଣ୍ଟେ ଏକ୍ କୁର୍ସୀପର୍ ବୈଠ୍ କର୍ "ଉତ୍କଳ ପ୍ରସଙ୍ଗ"ରୂପୀ ଖେତ୍ କୋ କଲମ୍‌ରୂପୀ ଖୁର୍ପୀସେ ଗୋଡ଼୍‌ତା ରହେଗା ?"

"ଉତ୍କଳ ପ୍ରସଙ୍ଗ"ରୁ ଟିକିଏ ଅବସର ପାଇଲାମାତ୍ରେ ଆପଣ ତୁଳସୀ ରାମାୟଣ ତଥା ଅନ୍ୟାନ୍ୟ ଭକ୍ତି-ସାହିତ୍ୟର ଚର୍ଚ୍ଚା କରୁଥାନ୍ତି । ଆଜି ମଧ୍ୟ "ଉତ୍କଳ ପ୍ରସଙ୍ଗ" ଛପା ଚାଲିଛି, ପ୍ରୁଫ୍‌ଦେଖା ଚାଲିଛି; କିନ୍ତୁ ଷୋହଳ ଘଣ୍ଟା ଧରି ଏହି ସାହିତ୍ୟର ଚର୍ଚ୍ଚା ବର୍ତ୍ତମାନ ହେଉ ନାହିଁ । ଅବଶ୍ୟ ସମସ୍ତଙ୍କର ସ୍ୱଭାବ ସମାନ ନ ଥାଏ ଓ ଅଭିରୁଚି ମଧ୍ୟ ଭିନ୍ନ ଭିନ୍ନ; କିନ୍ତୁ ଯଦି ଜଣେ ମାନବ ମାନବ-କଲ୍ୟାଣଲାଗି ମାନବ-ଜୀବନ-ସାହିତ୍ୟଚର୍ଚ୍ଚାରେ ଲାଗିଛି ତ ଅନ୍ୟ ଜଣେ ସେହିପରି କରିବ ନାହିଁ କାହିଁକି ?

ଆପଣଙ୍କୁ ବିଦିତ ଯେ ମାନବଚରିତ୍ର ହିଁ ମାନବ-କଲ୍ୟାଣକାରକ ସାହିତ୍ୟ । ଏହା ବ୍ୟତୀତ ସାହିତ୍ୟରେ ବା ଥାଏ କଣ ? କିନ୍ତୁ ଲୋକେ ସାହିତ୍ୟକୁ ବିଳାସ-ବସ୍ତୁରୂପେ ବ୍ୟବହାର କରି ଚାଲିଛନ୍ତି ତୀବ୍ର ଗତିରେ । କେବଳ ସେତିକି ନୁହେଁ; ଶ୍ରେଷ୍ଠ ସ୍ଥାନ ପାଇବାପାଇଁ ପ୍ରତିଯୋଗିତା ଚାଲିଛି । ଆଜି ମାନବର ଦିନଚର୍ଯ୍ୟା ହେଉଛି—ପ୍ରଥମେ ମୁଁ ବଞ୍ଚେ, ମୋର ପିଲାଏ ବଞ୍ଚନ୍ତୁ; ପରର ଚିନ୍ତା ପରେ । "ପରମାର୍ଥକେ କାରଣ୍ ସାଧୁନ୍ ଧରା ଶରୀର" ଉକ୍ତିଟି ଫେଲିଟିଯାଇଛି । ଆପଣ ତ ସାହିତ୍ୟ-ସୁଧାସାଗରରେ ବୁଡ଼ ବୁଡ଼ ସେଥିରେ ହିଁ ବୁଡ଼ିରହିଲେ; ବର୍ତ୍ତମାନ ସେହି ସାଗରରୁ ରତ୍ନରାଜି ଖୋଜି ଆଣିବ କିଏ ? ରାସ୍ତା ବା ଦେଖାଇବ କିଏ ?

ଆପଣ ରାମଭକ୍ତିରୂପ ପ୍ରେମରସ ପାନ କରିଛନ୍ତି; ଭକ୍ତ ଧୀବରର ଭକ୍ତିପୂର୍ଣ୍ଣ ଉକ୍ତି—"ନଉକା ନାରୀକା ହେଲେ ବୁଡ଼ିବ ଭେଲା" ମଧ୍ୟ ପାଠ କରିଛନ୍ତି । 'କଳଙ୍କ-ଘରଣି' ଆପଣଙ୍କଠାରୁ ଯେଉଁ ଢଙ୍ଗରେ ପୂଜା-ଅର୍ଚ୍ଚନା ପାଉଥିଲା, ତାହା କରିବ କିଏ ? "ପୀନପୟୋଧରପରିସରମର୍ଦ୍ଦନ ଚଞ୍ଚଳକରଯୁଗଶାଳୀ"ର ଗାନ ତ ଶୁଣାଯାଉଛି; କିନ୍ତୁ ପ୍ରାଣରେ ପୁଲକ ଆଣିବାଭଳି ମଧୁର ଧ୍ୱନି—"ବସ୍ତୁ ପଦା ବସ୍ତୁ ପଦ, ଛକାର ଭେଦ ଶବଦ"ର ଗାନ ଶୁଣାଯାଉ ନାହିଁ ।

ଆଜି ଭକ୍ତି-ସାହିତ୍ୟର ମାନଭଙ୍ଗ ହେଲାଭଳି ମନେ ହୁଏ । ଆପଣ କଅଣ ଏହା ଦେଖୁ ନ ଥିବେ ? ଲକ୍ଷ୍ୟ କରୁ ନ ଥିବେ ? ନିଶ୍ଚୟ ଦେଖୁଥିବେ । ଯେ ନିତ୍ୟ, ସେ ନିତ୍ୟକୁ ଦେଖେ ।

ଭାବାବେଶରେ ମନକଥା ବ୍ୟକ୍ତ କରିଗଲି । କ୍ଷମା କରିବେ । ଯଦି କିଛି ଦେଇପାରନ୍ତି, ଦିଅନ୍ତୁ ।

ଆପଣଙ୍କର
**ଅନସୂୟାପ୍ରସାଦ ପାଠକ**

# ବଛନ୍ଦ ମଉସା



ମଉସାରୂପେ ଚହ୍ନାଜଣା ୧୯୧୪ ସାଲରୁ; ତାଙ୍କ ଜନମମାଟି ଯାଆଁଳା ଗାଆଁରୁ । ମୁଁ ଯାଇଥାଏଁ ମାଉସୀଘର । ବଛନ୍ଦବାବୁଙ୍କ ବଡ଼ଭାଇ ସ୍ୱର୍ଗତ ପଦ୍ମଚରଣ ବାବୁ ମୋର ମଉସା । ସେଇ ସୂତ୍ରରେ ଯାଆଁଳା (ଖୋରଧା ଅନ୍ତର୍ଗତ) ଯାଇଥିବା-ବେଳରୁ ଜଣାଃଶୁଣା ।

ତା'ପରେ ବେଶୀ ସମ୍ପର୍କ—ନିକଟରୁ ନିକଟତର-ତମ—ଗଢ଼ିଉଠିଲା ସ୍ୱର୍ଗୀୟ ଗୋପାଳ ପ୍ରହରାଜଙ୍କ ଭାଷାକୋଷ କାମବେଳେ । ସେତିକିବେଳେ ଆମର ଚର୍ଚ୍ଚା ହୁଏ ପୁରୁଣା ଓଡ଼ିଆ ସାହିତ୍ୟ । ଜୀବନକାଳ-ଯାକ—ଅଉଲରୁ ଆଖରପର୍ଯ୍ୟନ୍ତ ବଛନ୍ଦ ମଉସା ଥିଲେ ନିରେଳ ଓଡ଼ିଆ । ମୋତେ ସେ ଅତି ସୁଖ ପାଉଥିଲେ ରାସଦଳର କୃତିତ୍ୱ ଦେଖି । ସେଥିରେ ବହୁ ଓଡ଼ିଆ କବିଙ୍କ ପାଶୋରା ଲେଖା ଗୀତ ସଜଡ଼ା ହୋଇ ଖଞ୍ଜା ହୋଇ ପରଷା ଯାଉଥାଏ । ରାତି ରାତି ଦେଖନ୍ତି ସେ । ମୁଁ ଦେଖିଛି, ସେ ଦେଖୁଥିଲେ ଅନେକ ସମୟରେ ଲୁହଧୂଆ ଆଖିରେ । ବେଳେବେଳେ ବନମାଳୀଙ୍କର—କାହିଁ ରଖିବି ଏ ନେହ—ତାଙ୍କ ଭାବବିଭୋଳା ଖନବଜା କଣ୍ଠରୁ ବାହାରିପଡ଼େ । ସେ କଥା—ସେ ମୁହଁ—ସେ ସରାଗ—ଢଳଢଳ ଦିଶିଯାଉଛି ମୋତେ । ଓଡ଼ିଶୀ ଗୀତ, ଓଡ଼ିଆ ଛାନ୍ଦ ଥିଲା ମଉସାଙ୍କ ଜୀବନର ଜୀବନ ।

ଅବସ୍ଥା ଭଲ ନ ଥାଏ—ସବୁ ଦିଗରୁ । ମୋର ଓଡ଼ିଶା ଥିଏଟର୍ସ ମଞ୍ଚରେ ଜୟଦେବ ଦେଖିଆସିଥିଲେ ସେ । ଅଭିନୟ ପ୍ରଦର୍ଶନ ସରିଲା । ଦେଖଣାହାରୀଏ ସେ ଯୁଆଡ଼େ ଗଲେଣି । ବଛନ୍ଦ ମଉସା ତାଙ୍କ ସ୍ଥାନରେ ବସିଛନ୍ତି । ଜଣେ ଅଧେ ଅଭିନେତା ମୋତେ ଆସି ଖବର ଦେଲେ । ମୁଁ ତତ୍‌କ୍ଷଣାତ୍ ତାଙ୍କ ପାଖକୁ ଯାଇ ଏତେବେଳଯାଏ ବସିଥିବାର କାରଣ ପଚାରିଲି । ଉତ୍ତର ଦେଲେ—"ତୁମକୁ ଚାହିଁ ବସିଥିଲି କାଳି !" ହଠାତ୍ କାନ୍ଦ ପକାଇଲେ । ମୋତେ କୋଳକୁ ଭିଡ଼ିନେଇ ମୁଣ୍ଡଉପରେ ଦି'ବୁନ୍ଦା ତାତିଲା ଲୁହ ଢାଳି କହିଲେ—"ଠିକ୍ ଓଡ଼ିଆପୁଅ ତୁମେ ! ତମକୁ ଆମ ଜୟଦେବ ଚାହିଁଥାଆନ୍ତି । ଜାଣ ତ ମଉସା ତମର ଗରିବ । ତମ କଲମ ତାଜା ରହୁ ।" ଏତିକି କହି ତାଙ୍କ ବ୍ରେଷ୍ଟପକେଟରୁ ତାଙ୍କ ଫାଉଣ୍ଟେନ୍ ପେନ୍‌ଟି ମୋତେ ବଢ଼ାଇଦେଲେ—"ଏ କଲମ ମୁଁ ତୁମ ହାତେ ଦେଲି; ତୁମେ ବାପର ନାଁ ରଖ ।"

ଆଜ ମଉସା ଗଲେଣି—କଲମଟି ଅଛୁ । କେତେ ରାଜାରାଜୁଡ଼ା, କେତେ ଧନବନ୍ତ କେତେ କନସ ମୋତେ ଦେଇଛନ୍ତି, ହେଲେ ଅଭାବଗ୍ରସ୍ତ ବନ୍ଧୁ ମଉସାଙ୍କର ଏ ଦାନ ! ଏ ଆଶୀର୍ବାଦ—କୋଟିନିଧି କରି ସାଇତି ରଖିଛୁ ମୁଁ । ଏ ପ୍ରାଣ, ଏ ସରାଗ, ଏ ଜାତିପ୍ରୀତି—କାହିଁ ? କେତେ ଜଣଙ୍କ ପାଖେ ସମ୍ଭବ ?

ଭଞ୍ଜ-ଜୟନ୍ତୀବେଳେ ଥରେ କଳି ଲାଗିଥିଲା ତାଙ୍କର ମୋର । ସେ କହନ୍ତି, ଭଞ୍ଜେ କବି-ସମ୍ରାଟ୍ —ମୁଁ ବୋଲେ ଭଞ୍ଜେ ସଙ୍ଗୀତ-ସମ୍ରାଟ୍ ମଧ୍ୟ । ବହୁତ କଥା ସେ—ଏଠି ଲେଖିବାକୁ ଠାବ ନାହିଁ । ହେଲେ ମୁଁ ମଉସାଙ୍କୁ ହରାଇଦେଲି ନାନା ଦାଖଲା ଦାଖଲ କରି । ସେଦିନ ତାଙ୍କର ସେ କି ଆନନ୍ଦ !

ସେ ଗଲେ—ମୁଁ କହିବି ଛାନ୍ଦ, ପୁରୁଣା ସାହିତ୍ୟର ଆଦର—ତା ସଙ୍ଗେ ଭଞ୍ଜକବି—ସଭିଏଁ ଦୂରଦୁଆ ଦେଲେ ସତେ ! ଏ ଜାତିର ଅଭିମାନଭରା ପଟେ କଂସାକବାଟ ଭାଙ୍ଗିଚୁରିଗଲା ।

ତାଙ୍କ ବାଟ, ତାଙ୍କ ଧର୍ମ, ତାଙ୍କ ଉଦ୍ଦେଶ୍ୟ ଆମେ ରଖିପାରିଲେ ତାଙ୍କୁ ଜିଆଁଇ ରଖିପାରିବା; ଏତିକ ଯେମିତି ମନେ ରହେ ।

ଆଉ କିଛି ମାଗୁ ନାହିଁ ମଉସା—ଏତିକ ଆଶୀର୍ବାଦ କରିବ ଆମକୁ, ଆପଣଙ୍କ ଅନୁଷ୍ଠାନ କଳିଙ୍ଗ-ଭାରତୀକୁ, ଏ ଜାତିକି ।

ପ୍ରଣତିପୂର୍ବକ ସେବକ

**କାଳୀଚରଣ**

# ସରସ୍ୱତୀଙ୍କ ବିଗହ୍ଲା ପୁଅ

ବିଚ୍ଛନ୍ଦଚରଣ ପଟ୍ଟନାୟକ ଯାଁଳାନବାସୀ ସଂଭ୍ରାନ୍ତ କରଣକୁଳେ ଜାତ ଗୋଲକକୃଷ୍ଣ ପଟ୍ଟନାୟକଙ୍କର ମଧ୍ୟମ ପୁତ୍ର । ତାଙ୍କର ଜ୍ୟେଷ୍ଠ ପୁତ୍ର ପଦ୍ମଚରଣ ପଟ୍ଟନାୟକ ଓଡ଼ିଶା ଗଭର୍ଣ୍ଣମେଣ୍ଟର ଶିକ୍ଷା ବିଭାଗରେ ଶିକ୍ଷକତା କରିଥିଲେ । କାଳୀଚରଣ ପଟ୍ଟନାୟକ ଓଡ଼ିଶା ସରକାରଙ୍କ ଅଧୀନରେ ସବ୍‌ରେଜିଷ୍ଟ୍ରାର କାର୍ଯ୍ୟ କରୁଥିଲେ । କିନ୍ତୁ ଗୋଲକକୃଷ୍ଣଙ୍କର ପିତା ସତ୍ୟବାଦୀ ସଂଗତିସମ୍ପନ୍ନ ଥିଲେହେଁ ଗୋଲକକୃଷ୍ଣଙ୍କ ଅମିତବ୍ୟୟିତା ହେତୁ ସେ ସମସ୍ତ ସମ୍ପତ୍ତି ହରାଇଥିଲେ । ଗୋଲକକୃଷ୍ଣ ପଟ୍ଟନାୟକ ପ୍ରାଚୀନ ସାହିତ୍ୟର ବିନୋଦୀ ଥିଲେ ଏବଂ ଅନେକ ସଂସ୍କୃତ ଚାଣକ୍ୟ ଶ୍ଳୋକାଦି କଣ୍ଠସ୍ଥ କରିଥିଲେ । ତାଙ୍କର ଲୋକପ୍ରିୟତା ଓ ବଦାନ୍ୟତା ହେତୁ ସେ ସମ୍ପତ୍ତିହୀନ ହୋଇଥିଲେ; କିନ୍ତୁ ତାଙ୍କର ସୁକୃତ ଫଳରୁ ତାଙ୍କର ପୁତ୍ରମାନେ କୃତବିଦ୍ୟ ହୋଇଥିଲେ । ବିଚ୍ଛନ୍ଦଚରଣ ସତ୍ୟବାଦୀ ସ୍କୁଲରୁ ମାଟ୍ରିକ୍ୟୁଲେସନ୍ ପାସ କରିଥିଲେ । ତାଙ୍କର ଅତ୍ୟନ୍ତ ଭାବପ୍ରବଣତା ଏବଂ ଦେଶପ୍ରାଣତା ହେତୁ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ବିଦ୍ୟାଶିକ୍ଷାରୁ ନିବୃତ୍ତ ହୋଇଥିଲେ । ୧୯୨୩ ମସିହାରେ ଗୋଲକକୃଷ୍ଣ ପଟ୍ଟନାୟକ ବିଚ୍ଛନ୍ଦଙ୍କୁ ଆଣି ମତେ ସମର୍ପିଦେଇ କହିଲେ, "ଏ ପୁତ୍ରଟି ଆପଣଙ୍କର, ମୋର ନୁହେଁ । ଏହାର ଭବିଷ୍ୟତ କଥା ଆପଣ ବୁଝିବେ ।" ବିଚ୍ଛନ୍ଦଚରଣଙ୍କର ଆଇ.ଏ. ଓ ବି.ଏ. ପଢ଼ିବାର ସମସ୍ତ ସୁବିଧା କରିଦେଇଥିଲି ଏବଂ ସେ ଇଂରାଜୀରେ ଅନର୍ସ ସହିତ ବି.ଏ. ପାସ କରିଥିଲେ । ବିଚ୍ଛନ୍ଦଚରଣଙ୍କର ସ୍କୁଲରେ ଅଧ୍ୟୟନ କାଳରୁ ତାଙ୍କର ଇଂରାଜୀରେ ଦକ୍ଷତା ଥିଲା । ମୁଁ ଦେଖିଛି, ମାଟ୍ରିକ୍ୟୁଲେସନ୍ ପାସରେ ଇଂରାଜୀରେ ଯେ ଜ୍ଞାନ ଥିଲା, ତାହା ବି.ଏ. ଉପାଧିଧାରୀ ଛାତ୍ରଙ୍କଠାରୁ କୌଣସି ଅଂଶରେ ଊଣା ନ ଥିଲା । ଓଡ଼ିଆ ସାହିତ୍ୟରେ ତାଙ୍କର ସେପରି ବ୍ୟୁତ୍ପତ୍ତି ନ ଥିଲା । ମୋର ସାହାଯ୍ୟରେ ବିଚ୍ଛନ୍ଦଚରଣ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପାରଙ୍ଗମ ହୋଇପାରିଥିଲେ । ସେ ବେଳକୁ ମୁଁ ପ୍ରାଚୀ ସମିତି ସଂସ୍ଥାପନ କରି ମୋର ଗ୍ରନ୍ଥ ସଙ୍କଳନ କାର୍ଯ୍ୟ ଆରମ୍ଭ କରିଥିଲି । ବିଚ୍ଛନ୍ଦଚରଣ, ଅମରେନ୍ଦ୍ରବଲ୍ଲଭ, ନିମାଇଁ ଚରଣ, ଜଗତାନନ୍ଦ, କରୁଣାକର ପ୍ରମୁଖ ଛାତ୍ରମାନେ ଏବଂ ପ୍ରଫେସରଙ୍କ ମଧ୍ୟରୁ ଶ୍ରୀ ଗୁରୁଚରଣ ମହାନ୍ତି ଓ ଶ୍ରୀ ଲକ୍ଷ୍ମୀକାନ୍ତ ଚୌଧୁରୀ ମୋର ସହାୟକ ଥିଲେ । ପ୍ରଫେସର ଗୁରୁଚରଣ, ଲକ୍ଷ୍ମୀକାନ୍ତ, ଜଗଦାନନ୍ଦ, ବିଚ୍ଛନ୍ଦ ମୋର ଏ କାର୍ଯ୍ୟରେ ନିତ୍ୟ ଯୋଗଦାନ କରୁଥିଲେ । ପ୍ରାଚୀ ସମିତିର ପ୍ରେସରେ କାର୍ଯ୍ୟ ଆରମ୍ଭରୁ ବିଚ୍ଛନ୍ଦଚରଣ ସମିତିର ବ୍ୟବହର୍ତ୍ତା ବା ସେକ୍ରେଟେରୀରୂପେ କାର୍ଯ୍ୟ କଲେ । ପ୍ରାଚୀ ସମିତିର ଇଂରାଜୀର ତ୍ରୈମାସିକ ପତ୍ରିକାର ମଧ୍ୟ-ସେ-ଏଡ଼ିଟର ହୋଇଥିଲେ । ତାଙ୍କର କର୍ତ୍ତୃତ୍ୱରେ ପ୍ରାଚୀ ପତ୍ରିକା ସୁଖ୍ୟାତିଲାଭ କରିଥିଲା ଏବଂ ଏହା ବହୁ ପଣ୍ଡିତଙ୍କଦ୍ୱାରା ପ୍ରଶଂସିତ ହୋଇଥିଲା । ବିଚ୍ଛନ୍ଦଚରଣଙ୍କର ବ୍ୟବସାୟ-ବୁଦ୍ଧି ନ ଥିବାରୁ ଏବଂ ଆମ୍ଭମାନଙ୍କ ଉପଯୁକ୍ତ ତତ୍ତ୍ୱାବଧାନ ଅଭାବରୁ 'ପ୍ରାଚୀ' ପତ୍ରିକାର ଗ୍ରାହକଙ୍କଠାରୁ ଅର୍ଥ ସଂଗ୍ରହ ହୋଇପାରିଲା ନାହିଁ ଓ ଆମ ଦେଶର ଗ୍ରାହକମାନେ ମଧ୍ୟ ସ୍ୱତଃପ୍ରବୃତ୍ତ ହୋଇ ମୂଲ୍ୟ ଦେବାରେ କୁଣ୍ଠିତ । ତହିଁ ପ୍ରାୟ ୨୦୦୦ ଟଙ୍କା କ୍ଷତି ସହିବାରୁ 'ପ୍ରାଚୀ' ପତ୍ରିକା ଆଉ ପ୍ରକାଶ ପାଇପାରିଲା ନାହିଁ ।

ବଞ୍ଛାନିଧିଚରଣ ଅତ୍ୟନ୍ତ ଭାବପ୍ରବଣ ହେତୁ ସମୟେ ସମୟେ ପାଗଳ ହୋଇଯାଉଥିଲେ ଏବଂ ବହୁ ସାବଧାନରେ ସହିତ ତାଙ୍କର ସୁସ୍ଥତା ଅଣାଯାଉଥିଲା । ପ୍ରାଚୀ ପ୍ରେସର କାର୍ଯ୍ୟ ମିସନ୍ ପ୍ରେସର କାର୍ଯ୍ୟ ସଙ୍ଗେ ସମତୁଲ ହୋଇପାରିଥିଲା ଏବଂ ସେ କାର୍ଯ୍ୟ ବହୁ ପ୍ରଶଂସିତ ହେଉଥିଲା ଏବଂ ବଞ୍ଛାନିଧିଚରଣଙ୍କର ବ୍ୟବସ୍ଥାପନା କାର୍ଯ୍ୟକାଳରେ ଅନେକ ପ୍ରାଚୀ ଗ୍ରନ୍ଥ ପ୍ରକାଶ ପାଇଥିଲା । ବଞ୍ଛାନିଧିଚରଣ ନିଜେ ଶଶିରେଖା ଓ ଚଉତିଶା ମାଳା ଶୁଦ୍ଧପାଠ ଓ ଟୀକା ମୁଖବନ୍ଧ ସହିତ ପ୍ରକାଶ କରିଥିଲେ । ବଞ୍ଛାନିଧିଚରଣଙ୍କର କବିତ୍ୱ ମଧ୍ୟ ପ୍ରଶଂସନୀୟ । ଦୈବ-ଦୁର୍ବିପାକରେ ପ୍ରାଚୀ ସମିତି ଦଶା-ବିପର୍ଯ୍ୟୟ ଉପସ୍ଥିତ ହେଲା ଏବଂ ଅଯୋଧ୍ୟା ଗଣେଶଘାଟରୁ ପ୍ରେସ ଏବଂ କାର୍ଯ୍ୟାଳୟ ଦୂରୀଭୂତ ହେଲା । କାଳକ୍ରମେ ବଞ୍ଛାନିଧିଚରଣ ପ୍ରାଚୀ ସମିତିରୁ ବିଦାୟ ନେଲେ । ତତ୍‌ପରେ ସେ ସାହିତ୍ୟ-ସମାଜରେ ଯୋଗଦାନ କରି କିଛିକାଳ ସେଠାରେ ବ୍ୟବସ୍ଥାପକ ହୋଇଥିଲେ । ବଞ୍ଛାନିଧି ସାହିତ୍ୟରସିକ ଥିବାରୁ ମୋର ପ୍ରାଚୀନ ସାହିତ୍ୟ ଉଦ୍ଧାର ଏବଂ ଉତ୍କଳୀୟ ପ୍ରାଚୀନ କବିମାନଙ୍କର ଗୌରବ ପ୍ରକାଶ କରିବା ଧର୍ମ ମୋ ପୂର୍ଣ୍ଣତଃ ଅବଲମ୍ବନ କରି 'କଳିଙ୍ଗ-ଭାରତୀ' ସଂସ୍ଥାପନ କରି ବିଶେଷତଃ ଉପେନ୍ଦ୍ରଭଞ୍ଜଙ୍କର ଅଦ୍ଭୁତ ଶବ୍ଦମନ୍ତ୍ର ପ୍ରକାଶଛଳରେ ପ୍ରତି-ବର୍ଷ "ଭଞ୍ଜ-ଜୟନ୍ତୀ" ଯଥାବିଧି ପାଳନ କରିଆସୁଥିଲେ । ସେହି କଳିଙ୍ଗ ଭାରତୀର ବଞ୍ଛାନିଧିଚରଣଙ୍କର ପ୍ରିୟ ଛାତ୍ରବୃନ୍ଦ ବଞ୍ଛାନିଧିଙ୍କର ବିୟୋଗପରେ ମଧ୍ୟ ଯଥାବିଧି ସମାରୋହରେ ପାଳନ କରିଅଛନ୍ତି । ବଞ୍ଛାନିଧିଚରଣ ଏପରି ସାହିତ୍ୟପ୍ରେମୀ ଥିଲେ ଯେ ସାହିତ୍ୟସେବାଛଳରେ ସେ ଅନେକ କବିତା ରଚନା କରିଅଛନ୍ତି; ବିଶେଷତଃ ଉପେନ୍ଦ୍ରଭଞ୍ଜଙ୍କର କାବ୍ୟର କେତେକ ଅଂଶ ଇଂରାଜୀରେ ଅନୁବାଦ କରି ପ୍ରଶଂସାର୍ହ ହୋଇଅଛନ୍ତି । ସେ "ତୁଳସୀ ବିନୟ ପତ୍ରିକା", "ସଂସ୍କୃତ ଅମରୁଶତକ," ସେକ୍‌ସପିୟରଙ୍କର କଥାମାଳା ପ୍ରଭୃତି ଓଡ଼ିଆରେ ରଚନା କରି ଉତ୍କଳ ସାହିତ୍ୟ-କୁଞ୍ଜକୁ ବିମଣ୍ଡିତ କରିଅଛନ୍ତି ।

ସଂକ୍ଷେପରେ କହିବାକୁଗଲେ ବଞ୍ଛାନିଧିଚରଣ ପ୍ରତିଭାବାନ୍, ଧର୍ମପରାୟଣ, ପରଦୁଃଖକାତର, ଦେଶପ୍ରାଣ ଥିଲେ । ସେ ଅତ୍ୟନ୍ତ ଭାବପ୍ରବଣହେତୁ ତାଙ୍କର ସ୍ୱଭାବର ଉଗ୍ରତାବଶତଃ ସେ ନିଜେ ନିଜର ଉନ୍ନତିର ଅନ୍ତରାୟ ହୋଇଥିଲେ । ସେ ସରସ୍ୱତୀ ଦେବୀଙ୍କର ଗେହ୍ଲାପୁଅ ଥିଲେ ।

**ଆର୍ତ୍ତବଲ୍ଲଭ ମହାନ୍ତି**
ତା ୩୧।୧।୬୨

# ବିଚ୍ଛନ୍ଦ ବାବୁଙ୍କୁ ପତ୍ର

ବିଚ୍ଛନ୍ଦ ବାବୁ,

ଆପଣ ହଠାତ୍ ଆମ୍ଭମାନଙ୍କର ସଂପର୍କ ଛିନ୍ନକରି—'ଯଦ୍ ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ' ସେହି ଅବ୍ୟାବର୍ତ୍ତନୀୟ ଅନାମୟ ଧାମକୁ ଚାଲିଗଲେ । ଆପଣଙ୍କ ସଙ୍ଗେ ମୋର ପ୍ରଥମ ସାକ୍ଷାତ ହୋଇଥିଲା **୧୯୪୧** ଖ୍ରୀଷ୍ଟାବ୍ଦରେ, ଯେତେବେଳେ ଆପଣଙ୍କ ଉଦ୍ୟମରେ ଉତ୍କଳ-ସାହିତ୍ୟ-ସମାଜ, କଟକ ପକ୍ଷରୁ ଏକ-ସପ୍ତାହବ୍ୟାପୀ ସାରସ୍ୱତ ମହୋତ୍ସବ ଅନୁଷ୍ଠିତ ହେଉଥାଏ । ତାହାର ଅଳ୍ପ କେତେ ମାସପରେ ସାହିତ୍ୟ-ସମାଜରେ ମୋର ଭାଷଣ ଶୁଣି ଆପଣ ମତେ ଅସୀମ ପ୍ରେରଣାରେ ପୁଲକିତ କରିଦେଇଥିଲେ ଏବଂ ସେହି ସୂତ୍ରରେ ସାହିତ୍ୟ-ସମାଜର ପାବନ ସାନ୍ନିଧ୍ୟ ବାରମ୍ବାର ଲାଭକରିବାର ସୌଭାଗ୍ୟ ମୋପକ୍ଷରେ ଅତି ସହଜ ହୋଇଥିଲା । ଆପଣ ଭଞ୍ଜ-ଜୟନ୍ତୀ ଅନୁଷ୍ଠାନର ପ୍ରତିଷ୍ଠାତାରୂପେ ଏବଂ ପ୍ରାଚୀନ ଛନ୍ଦ-ବନ୍ଧ-ବିକଶିତ କବିତାବଳୀର ରଚୟିତାରୂପେ ସାଧାରଣ ସାହିତ୍ୟପ୍ରେମୀ ସମାଜରେ ପରିଚିତ ହୋଇଥିଲେହେଁ ମୋ ଦୃଷ୍ଟିରେ ପ୍ରାବନ୍ଧିକରୂପେ ଆପଣଙ୍କର ବ୍ୟକ୍ତିତ୍ୱ ପ୍ରକାଶ ଅଧିକତର ଗୌରବର ଅଧିକାରୀ । ଓଡ଼ିଆ ପ୍ରବନ୍ଧ ଓ ଆଲୋଚନା ସାହିତ୍ୟ ବହୁ ଲେଖକଙ୍କର ସାମୂହିକ ସାଧନାବଳରେ ଆଜି କ୍ଷିପ୍ର ପଦକ୍ଷେପରେ ଅଗ୍ରଗତି କରୁଥିଲାବେଳେ ଆପଣଙ୍କର ପ୍ରବନ୍ଧ ସଂକଳନ ଦିଗରେ ଦୃଷ୍ଟି ଦିଆଯିବା ଏକାନ୍ତ ଆବଶ୍ୟକ । ଭାଷାର ସଙ୍ଗମ, ପାରମ୍ପରିକ ଆଦର୍ଶର ଅଖଣ୍ଡ ଅନୁସରଣ ଓ ଜନ୍ମଭୂମିର ଗୌରବାବହ ତତ୍ତ୍ୱସମୂହର ବଳିଷ୍ଠ ପ୍ରକାଶ ଆପଣଙ୍କର ସିଦ୍ଧ ଲେଖନୀର ଗୃଶନିକ ଉତ୍କର୍ଷରୂପେ ସ୍ୱୀକୃତ ହୋଇଥାଏ । ଆଜି ଏହି ଅବସରରେ, ଆପଣଙ୍କର ଜନ୍ମଭୂମିପ୍ରୀତିର ବ୍ୟାପକ ପ୍ରକାଶ ଉତ୍କଳର ଲକ୍ଷ ଲକ୍ଷ ଅନ୍ତରରେ ଶୀଘ୍ର ସଂଘଟିତ ହେବାର କାମନା କରିବା ସଙ୍ଗେ ସଙ୍ଗେ ଆପଣଙ୍କର ଓଡ଼ିଆ ଭାଷା, ଓଡ଼ିଆ ଜାତି ଓ ପ୍ରାଚୀନ ଓଡ଼ିଆ ସାହିତ୍ୟର ସାଧାରଣ ଉତ୍କର୍ଷପ୍ରତି ପ୍ରଗାଢ଼ ମମତାର ଅନୁସରଣ କ୍ଷଣକାଳଲାଗି ମତେ ଅନୁକଂପିତ କରିଦେଉଛି । ବ୍ୟକ୍ତି ଚାଲିଯାଏ, ଆପଣ ଯାଇଛନ୍ତି—'ମରଣଂ ପ୍ରକୃତିଃ ଶରୀରିଣାମ୍'; କିନ୍ତୁ ଆପଣଙ୍କର ଅନ୍ତରର ଆବେଗମୟ ବାଣୀ କୋଟି ଅନ୍ତରକୁ କ୍ୱଣିତ କରୁ । ଏହାହିଁ ଦୀପ୍ତ ଆଶା ଓ ଏକାନ୍ତ କାମନା ।

**ଶ୍ରୀ ଗୌରୀକୁମାର ବ୍ରହ୍ମା**



କବି ବଚ୍ଛନ୍ଦଚରଣ

ଜନ୍ମ—୨୦ ଜାନୁଆରୀ, ୧୯୦୧ ତିରୋଧାନ—୧୪ ଜାନୁଆରୀ, ୧୯୬୧

# କବିପ୍ରାଣ ବଚ୍ଛନ୍ଦଚରଣ

ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, ବି.ଏ. ବି. ଇଡ଼.,
( କବିକୁଟୀର, ବାଣପୁର )

କବି ତା' ଜୀବନରେ କବିତା ଲେଖିଯାଏ,
ଆଖିର ଲୁହ ଅବା ଓଠର ହସ ଦେଇ,
ଧରଣୀତଳେ ତା'ର କି ଶିଖି ବଇଭବ ?
ସୋହାଗେ ତାରେ ଯେବେ ପଚାରେ ନାହିଁ କେହି !
କବି ତା' ଜୀବନରେ କବିତା ଗାଇଯାଏ,
ପାହାଡ଼ୀ ଝରଣାର ମଧୁର ତାନପରି,
ପାନ୍ଥ କିଏ ଯେବେ ଟିକିଏ ନାହିଁ ଶୁଣେ,
କଲଗି ଫୁଟେ ସେହି ମୋହନ ସୁଧାଭରି ?

କବି ତା' ଜୀବନରେ କବିତା ଯା' ଫୁଟାଏ,
ବସି 'ତା' ସାଧନାର ବିଜନ ବେଦୀପରେ,
ତାହାରେ ନ ଅନାଇ କେ' ଚାଲିଗଲେ ହାୟ !
କେତେ ସେ ଭୁଲ୍ ଆହା ଜୀବନେ ନାହିଁ କରେ ?
କବି ତ ମାଗେନାହିଁ ଟଙ୍କା, - ସୁନା, ରୁପା,
କବି ତ ମାଗେ ନାହିଁ ହର୍ମ୍ୟ ତନ ଚାଲ,
କବି ତ ମାଗେନାହିଁ କାହାଠୁ ହାତୀଘୋଡ଼ା
ରହିବ ରାଜଭୋଗେ ବିସୋରି ସବୁ ଭାର !
ସେ ଖାଲି ଖୋଜୁଥାଏ, ସେ କେଉଁ ଯୁଗେ କିଏ,
ତା' ମଧୁ-କବିତାରେ ମୁଗ୍ଧ ହେଲେ ବାରେ,
ସକଳ ସଂପଦ ପାଶରି ପାଇ ସେହି
ସେ ମରି ସ୍ୱର୍ଗପାଉ ସୁଦୂର କେଉଁ ପାରେ ।

ଜୀବନ ବାଣୀ ତାର, ହୃଦୟ ବାଣୀ ତାର
କା' ବୁକୁତଳେ ଯେବେ ପଳାଇପାରେ ଗାର,
ସେଇ ତା' ଜୀବନର ପରମକୋଟିନିଧି
ତା' ତହୁଁ କି ଅଧିକ ଥାଏ ତା' ପାଇବାର !!
ଧରଣୀ ରସମୟ କରିବାପାଇଁ ହାୟ
କି ମହାଧିଆନ ତା' ଜୀବନସାରା ଧରି
ଦୁଃଖ ନାହିଁ ତାର, ଖାତିର ନାହିଁ ତାର
ଅଭାବେ ଅନାହାରେ ରହୁ ସେ ପଚେ ପଡ଼ି !
ଏ ଭଳି କେତେ କବି ଜୀବନ ବୀଣାତାନ—
ସୋହାଗେ ତାଳଦେଇ ଉଭାଇ ଗଲେ କାହିଁ,
ଅଜ୍ଞାତ ଅନ୍ଧାରେ କାଳର ପାରିବାରେ
ଚୁମରିପାଇଁ ଅବା ସେମାନେ ଥିଲେ ରହିଁ !
ଦେଖିଛି ଜାଣିଛି ମୁଁ କରିଛି ଅନୁଭବ
ସେ ଓଲସିଂହର * ସେ ମାଟି ବକ୍ଷରେ
ଏ ଦେଶ କବି ମହାକବିର କାବ୍ୟ ଯେ
ଶୁଣାଉଥିଲ ତୁମେ କାହାର ଡାକରିରେ !
ସେ ଛୋଟ ପଲ୍ଲୀର ପାହାଡ଼, ବିଲ ବନ,
ଟାଙ୍ଗି ପ୍ରାନ୍ତର ସୁଦୂର ପଥଘାଟ ।
ସେ ମଧୁ ଗୀତ ତାନେ ଜୀବନ ପାଇ ଅବା
କି ଭଳି ହସୁଥିଲ ମୋହନ ଉଚ୍ଛାଟ !

---

* ଆଜକୁ ପ୍ରାୟ ୩୨ ବର୍ଷତଳେ ଓଲସିଂହ ହାଃ ଇଃ ସ୍କୁଲରେ ଏ ଲେଖକ ଛାତ୍ର ଥିବାବେଳେ ବଚ୍ଛନ୍ଦବାବୁ ସେଠାକୁ ଶିକ୍ଷକ ହୋଇ ଆସିଥିଲେ ଏବଂ ଛାତ୍ରାବାସର ଗୋଟିଏ ଛୋଟ ଚାଳଘରେ ରହୁଥିଲେ । ସେଠାରେ ବଚ୍ଛନ୍ଦବାବୁ ପ୍ରାଚୀନ କବିମାନଙ୍କର କାବ୍ୟ ଆଲୋଚନା କରନ୍ତି ଏବଂ ଛାତ୍ର-ସମାଜକୁ ପ୍ରାଚୀନ ସାହିତ୍ୟର ସୁଧାରସରେ ଅନୁପ୍ରାଣିତ କରନ୍ତି । ବହୁ ବିସ୍ମୃତ ପ୍ରାଚୀନ କବିମାନଙ୍କର ଲେଖା ମଧ୍ୟ ସଂଗ୍ରହ କରି ଛାତ୍ରମାନଙ୍କଦ୍ୱାରା ତାଳପତ୍ର ପୋଥିରୁ କାଗଜରେ ଉଦ୍ଧାରନ୍ତି । ବହୁ ସମସ୍ତ ପ୍ରାଚୀନ କବିମାନଙ୍କ ଲେଖାର ଉତ୍କୃଷ୍ଟତମ ଅଂଶ ଛାତ୍ରମାନଙ୍କୁ ପଢ଼ି ଶୁଣାନ୍ତି ।

ବର୍ଷ ଆଗେ ତୁମେ ଏ ଦେଶ କବିଗଣେ
ଦେବାକୁ ଶିଖାଇ ଲେଖନୀ ହାତେ ଧରି,
ନିପୁଣ ଲେଖୁଥିଲ କି ମହା-ଆବେଗରେ
କି ଓଜଭରା ଲେଖା ସିଂହଶିଶୁ ପରି ।

ସେ ଠିକ ଥିଲା ତବ ସ୍ୱପ୍ନ ଜୀବନର
ତାକୁହିଁ ଫୁଟାଇଛ ଜୀବନ ସାରା ତୁମେ,
ଜୀବନେ ଧନେ ମାନେ ବରିଷ୍ଠ ହେବାପାଇଁ
କେବେ ତ ଲୋଡ଼ିନାହିଁ ଧରଣୀ ଅଙ୍ଗନେ !

ସ୍ୱଦେଶ ସ୍ୱଜାତିର ଗୋଟିଏ ବିସ୍ମୃତ—
କବିର ସନ୍ଧାନ କାହାଠୁ ପାଇଗଲେ !
ହୀରକ ଖଣ୍ଡେ କି ମିଳିଲା ପରି ଲାଗେ !
ତା' ତହୁଁ ବଡ଼ଧନ ଜାଣିନ ଜୀବନରେ !
ଅଭାବ - ଅନଟନ ସହିତ ବହୁବାର
ସହିଚ ବିଦ୍ରୂପ କାହାର କେତେ ତୁମେ,
ତଥାପି ଲକ୍ଷ୍ୟରୁ ହୋଇନ ବିଚ୍ୟୁତ
ଝଞ୍ଜା - ଝଡ଼ ବହୁ ପ୍ରଳୟ ଗରଜନେ !

ସ୍ୱଦେଶ ସ୍ୱଜାତିର କବିରେ ପୂଜା କରି
ପରାଣେ ଗଉରବ ଯେ ଅନୁଭବ କରେ,
କବିର ନିନ୍ଦା ଯେ କି ଦେଶେ, କି ବିଦେଶେ
—ଶୁଣିଲେ ଶୋଣିତ ଯା' ତାତଇ ବୁକୁତଳେ ।
କବିରେ ଦେବାପାଇଁ ବିପୁଳ ସମାଦର
ଅନ୍ତରର କେଉଁ ଅନ୍ତଃପୁରୁ କାଢ଼ି,

ପାଗଳପରି ଯିଏ ନିପୁଣ ତନ୍ମୟ,
ଜାତିର ସଂପଦ ତା' ତହୁଁ କିଏ ବଳି ?
ସେଭଳି ସଂପଦ ତୁମେ ତ ଏ ଜାତିର !
ତୁମରି ଭଳି ଜଣେ ବରିଷ୍ଠ ବୀର ହିଆ
କେଉଁଠି ଲୁଚିଗଲା, କେଉଁଠି ଛପିଗଲା !
ତା' ଲାଗି ଖୋଜହୁଏ ଆଜିର ଏ ଦୁନିଆ ।

ତୁମରି ଭଳି ଜଣେ ଜ୍ଞାନୀ ଓ ପଣ୍ଡିତ
ତୁମରି ଭଳି ଜଣେ ସରସ କବିପ୍ରାଣ,
ଏ ଦେଶେ ଜନ୍ମିଥିଲ, ଆଲୋକଶିଖା ପରି,
କି ଖ୍ୟାମବତାସେ ତା' ହେଲାକି ଅବସାନ;
ଯାଇଛ ତୁମେ ସିନା ସୁଦୂର ପରପାରେ,
ତୁମରି ତୁଲେ ତୁମ ସ୍ୱପ୍ନ ଯାଇନାହିଁ,
ବିଞ୍ଚିରହିଛି ସେ ଅସୀମ ମହିମାରେ
ବର୍ଣ୍ଣ ଗନ୍ଧ ଯେ ସରାଗେ ମୁକୁଳାଇ !

ସାଗର ଶୁଖିପାରେ, ମେରୁ ବି ଟଳିପାରେ
ମରି ତ ପାରିବନି ତୁମରି ମହାଦାନ,
ଜୀବନେ ଯା' ଦେବାର ଜାତିକି ଦେଇଅଛ
ଏକାକୀ ପଥେ ତୁମେ ପଥିକ ମହାପ୍ରାଣ !

ନିଜରେ ଭୁଲି ଯିଏ ମାଟିର ଗଉରବ—
ଫୁଟାଇ ଗଲଅଛୁ ଜୀବନସାରା ଧରି
ମାଟିର ବକ୍ଷରେ ଗୋଲାପ ଗଛପରି
ସେ ତଳ ରହିଥିବ ମଳୟେ ଥରଥର ।



# ଅତୀତ ଓ ବର୍ତ୍ତମାନର ସ୍ୱର୍ଣ୍ଣସେତୁ

**ଶ୍ରୀ ମନମୋହନ ମିଶ୍ର**

ଓଡ଼ିଆ ସାହିତ୍ୟରେ ଗତ ଶତାବ୍ଦୀରେ ଯେତେ ଜଣ କୃତିମାନ୍ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଛି, ବିଚ୍ଛନ୍ଦଚରଣ ସେମାନଙ୍କ ଭିତରେ ଅନେକ ଗୁଣରେ ସ୍ୱତନ୍ତ୍ର । ଯେପରି ମନେହୁଏ, ବିଚ୍ଛନ୍ଦଚରଣଙ୍କର ଓଡ଼ିଆ ସାହିତ୍ୟପ୍ରୀତି ଅତି ଉଦ୍ଦାମ ଓ ତୀବ୍ର ଥିଲା । ବିଶେଷତଃ ପ୍ରାଚୀନ ଓ ମଧ୍ୟଯୁଗର ଗୀତ କାବ୍ୟକବିତାର ବିପୁଳ ଓ ପୁଷ୍କଳ ସମ୍ଭାରରେ ସେ ମୁଗ୍‌ଧ ହୋଇଥିଲେ । ସେଗୁଡ଼ିକର କ୍ଷୀଣ ପ୍ରଚାର ଦେଖି ସେ ସତତ ବ୍ୟାକୁଳ ଥିଲେ ।

ବିଚ୍ଛନ୍ଦଚରଣ ମନେ କରିଥିଲେ ଯେ ଓଡ଼ିଆ ପ୍ରାଚୀନ ଶୈଳୀ ଓ ଅଳଙ୍କାର ବ୍ୟବହାର ଛାଡ଼ିଥିବାଯୋଗୁଁ ତାହାର ବଳିଷ୍ଠତା ହିଗଇଛି । ତାଙ୍କର ଏପରି ମନେ କରିବାପାଇଁ ମଧ୍ୟ ଯଥେଷ୍ଟ ଯୁକ୍ତି ଥିଲା । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ବିଶେଷତଃ କବିସୂର୍ଯ୍ୟ ଓ ସାମନ୍ତସିଂହାରଙ୍କର କାବ୍ୟ-କବିତାରେ ଓଡ଼ିଆ ଭାଷା ଏକ ନବକଳେବର ଧାରଣ କରିଛି । ନୂତନ ଶବ୍ଦ ଆହରଣ ଓ ବିଶ୍ୱାସରେ ଓଡ଼ିଆ ସାହିତ୍ୟର ଶବ୍ଦଭଣ୍ଡାର ଏହି ଯୁଗରେ ଯେତେ ପରିମାଣରେ ସମୃଦ୍ଧ ହୋଇଥିଲା, ତାହାପରେ ଏଭଳି ସମୃଦ୍ଧି ଦେଖାଯାଇନାହିଁ । ଶବ୍ଦବିନ୍ୟାସର ଏହି ସାହସିକ ପ୍ରୟୋଗ ପ୍ରକୃତପକ୍ଷେ ବଳିଷ୍ଠତାର ଲକ୍ଷଣ ।

ବିଚ୍ଛନ୍ଦଚରଣଙ୍କ ବିଶେଷତ୍ୱ ଥିଲା ଏହି ଯେ ସେ କେବଳ ମଧ୍ୟଯୁଗୀୟ ସାହିତ୍ୟର ଉପାସକ ନ ଥିଲେ; ସେ ଥିଲେ ଉକ୍ତ ସାହିତ୍ୟ-ଶୈଳୀର ସାଧକ । ଉକ୍ତ ସାହିତ୍ୟକୁ ଓଡ଼ିଶାର ସୀମା ଲଙ୍ଘି ଭାରତରେ ପ୍ରଚାର କରିବାପାଇଁ ସେ ଥିଲେ ପ୍ରୟାସୀ । ଏ ପ୍ରୟାସ ପୂର୍ଣ୍ଣତଃ ସଫଳ ହୋଇପାରିନାହିଁ । ତାର କାରଣ ନୁହେଁ ଯେ ବିଚ୍ଛନ୍ଦଚରଣଙ୍କର ଏଥିପାଇଁ ଉଦ୍ୟମ ଊଣା ଥିଲା । ବରଂ ଏହାର କାରଣ, ଗୀତଯୁଗର କବିତା ବିଶେଷତଃ ଗୀତପ୍ରଧାନ ଥିଲା । ଗୀତ ସାଧାରଣତଃ ଭାଷାର ମାଧ୍ୟମରେ ଗଠିତ ହୋଇଥିବାରୁ ଭାଷାର ସୂକ୍ଷ୍ମ ନିବେଦନକୁ ରୂପାନ୍ତର କରିବା ଅସମ୍ଭବ ଥିଲା । ପୃଥିବୀର ପ୍ରତ୍ୟେକ ସାହିତ୍ୟର କବିତା ଅନ୍ୟ ଭାଷାରେ ଅନୂଦିତ ହେବାଫଳରେ ଆପଣାର ନିବେଦନର ବହୁ ଆକର୍ଷଣ ଓ ସୌଷ୍ଠବ ହରାଇବାକୁ ବାଧ୍ୟ । ଓଡ଼ିଆ ଗୀତକାବ୍ୟ ଅନୁବାଦ ଫଳରେ ଯେ ଏଥିରୁ ଅଧିକାଂଶ ହରାଇଛି, ଏକଥା ବିଚିତ୍ର ନୁହେଁ ।

ସାଧାରଣ ବୁଦ୍ଧିର ସାହିତ୍ୟପ୍ରେମୀପାଇଁ ମଧ୍ୟ-ଯୁଗର ସାହିତ୍ୟ ହେଉଛି ମୋଟଉପରେ ଆମର ଐତିହ୍ୟର ସାମିଲ । ଓଡ଼ିଶାର ସାହିତ୍ୟର ଧାରା ବଦଳିଲାପରେ ଏହି ମଧ୍ୟଯୁଗର କାବ୍ୟକବିତା ଯେ ଯାଦୁଘରର ସଙ୍ଗୀନ ହୋଇଯାଇଛି, ଏଥିରେ କୌଣସି ସନ୍ଦେହ ନାହିଁ । ଯେଉଁ ଆସର ଓ ଯାତ୍ରାରେ ଏହି ସାହିତ୍ୟ ଏପର୍ଯ୍ୟନ୍ତ ସମାଦର ଲାଭ କରିଛି, ତାହା ଆଧୁନିକ ରଙ୍ଗମଞ୍ଚଠାରୁ ଭିନ୍ନ । ତାହାର ପରିବେଶ ସ୍ୱତନ୍ତ୍ର । ତାହାକୁ ରେଡ଼ିଓ ବା ଇଥର୍‌ର ଆଧୁନିକ ମାଧ୍ୟମରେ ପ୍ରକାଶ କରିବା ଫଳରେ ଉକ୍ତ ସାହିତ୍ୟର ଅନ୍ତର୍ନିହିତ ନିର୍ମଳତା ଲୋପ ପାଇବାର ଆଶଙ୍କା ଦେଖାଦେଇଛି । ବିଚ୍ଛନ୍ଦଚରଣ ଏକଥା ଅନୁଭବ କରିଥିଲେ । ଗୀତଯୁଗର ପଦ୍ୟସାହିତ୍ୟ ସହିତ ତାଳ ରଖିଲାଭଳି ଯେଉଁ ଗଦ୍ୟ ପାଲଗାୟକ ବା ଦାସକାଠିଆମାନେ ବ୍ୟବହାର କରନ୍ତି, ତାହା

ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଲିଖିତ ଗଦ୍ୟସାହିତ୍ୟ ନୁହେଁ ବା ତାହା ଫକୀରମୋହନଙ୍କର ଗଳ୍ପ ବା ଉପନ୍ୟାସ ବା ଆତ୍ମଜୀବନ କାହାଣୀର ଗଦ୍ୟ ନୁହେଁ । ତେଣୁ ଯେତେବେଳେ ପ୍ରାଚୀନ ଗଦ୍ୟରୀତି ଆମେ ବହୁକାଳରୁ ପରିହାର କରିଥାଇଁ, ସେତେବେଳେ ପ୍ରାଚୀନ ପଦ୍ୟରୀତି ରକ୍ଷାକରିବା ସମ୍ଭବ ନୁହେଁ ବା ସଙ୍ଗତ ନୁହେଁ ।

ବିଚ୍ଛନ୍ଦଙ୍କର ଆଶା ଥିଲା ପ୍ରାଚୀନ ରୀତିର ବଳିଷ୍ଠତା, ସତେଜତା ଓ ପ୍ରାଣଶକ୍ତି ସହିତ ନୂତନ ରୀତିର ଅଧିକ ବୈଜ୍ଞାନିକତା ଓ ବ୍ୟାପକତାକୁ ସଂଯୋଗ କରିବା । ସେ ଜାଣିଥିଲେ ଯେ ଆଧୁନିକ ଜଗତରେ ଜନ୍ମ ଲଭିଥିବା ନାନା ଭାବଧାରା ପୁରାତନ ରୀତି ମାଧ୍ୟମରେ କଦାପି ଆତ୍ମପ୍ରକାଶ କରିପାରିବ ନାହିଁ । ପୁରାତନର ଫର୍ମା ଭିତରେ ଆଧୁନିକ ଭାବଧାରା ବିକଳାଙ୍ଗ ହେବାକୁ ବାଧ୍ୟ । କିନ୍ତୁ ଅନ୍ୟପକ୍ଷରେ ଓଡ଼ିଆ ଶୈଳୀର ସ୍ୱକୀୟତା ରକ୍ଷାପାଇଁ ପରମ୍ପରାକୁ ମୂଳଦୂଆ କରିବାକୁ ହେବ । ଓଡ଼ିଶାରେ ଏ ବିଷୟରେ ରାଧାନାଥଙ୍କ ଅମଳରେ ତୁମୁଳ ତର୍କବିତର୍କ ଚାଲିଥିଲା । ନୂତନ ଭଲ କି ପୁରାତନ ଭଲ, 'ଇନ୍ଦ୍ରଧନୁ' ବା 'ବିଜୁଳି' ଉଭୟଙ୍କ ଭିତରେ କିଏ ସତ୍ୟବାଦୀ—ଏ କଥା ନେଇ ଚହଳ ପଡ଼ିଥିଲା । ଆମର ପୂର୍ବସୂରିମାନେ ଯେତେବେଳେ ଏପରି ଆଲୋଚନାରେ ନ ମାତି ପୁରାତନ ରୀତି ଓ ନୂତନ ଭାବର ସମନ୍ୱୟ-ପାଇଁ ଅଣ୍ଟାଭିଡ଼ିଥିଲେ, ଓଡ଼ିଆ ଭାଷାର ଏକ ସ୍ୱାଭାବିକ ବିବର୍ତ୍ତନ ସମ୍ଭବ ହୋଇଥାଆନ୍ତା । ତାହା ନ ହେବା ଫଳରେ ପରମ୍ପରା ତ ଛିଣ୍ଡିଗଲା—ଯାହା ନୂତନ ନାମରେ ପ୍ରତିଷ୍ଠିତ ହେଲା, ତାହାର ଚେର ଓଡ଼ିଶାର ମାନସଭିତ୍ତିରୁ ଜନ୍ମ ନେଲା ନାହିଁ ।

ବିଚ୍ଛନ୍ଦଚରଣ ଆପଣା ଜୀବନକାଳରେ ପୁରାତନ ରୀତିପାଇଁ ସଂଗ୍ରାମ କରି ଗଳଦ୍‌ଘର୍ମ ହୋଇଥିଲେ । ତାଙ୍କର ସଂଗ୍ରାମରେ ଜୟପରାଜୟର ପ୍ରଶ୍ନ ନ ଥିଲା । ପ୍ରଶ୍ନ ଥିଲା, ଓଡ଼ିଆ ଶୈଳୀର ସ୍ୱକୀୟତାର ପ୍ରତିଷ୍ଠା । ଏହା ଏକ ସୁସ୍ଥ ଉଦ୍ୟମଭାବରେ ଗୃହୀତ ହୋଇଥିଲେ ବୋଧହୁଏ ତାଙ୍କୁ ବେଶୀ ବାଧି ନ ଥାନ୍ତା । ପ୍ରାଚୀନ ରୀତିପ୍ରତି ତାଙ୍କର ଆବେଗ-ପ୍ରଧାନ ସମର୍ଥନ ତାଙ୍କ ଆଚରଣପ୍ରତି ଆଧୁନିକ ଶୈଳୀଭକ୍ତଙ୍କୁ ଅସହିଷ୍ଣୁ କରିଦେଲା । ତେଣୁ ସେ ସମନ୍ୱୟ ଘଟାଇବାର ପଥର ପ୍ରତିବନ୍ଧକ ଦୂର କରିବାରେ ଲାଗିଲେ, ଆଉ ଅଗ୍ରସର ହେବାକୁ ଅବସର ପାଇଲେ ନାହିଁ ।

ଆଜି ସେ ଆଉ ନାହାନ୍ତି । ତାଙ୍କର ବିଦ୍ରୋହୀ ସାହିତ୍ୟ ରଚନା ଅପେକ୍ଷା ସେ ଯେ ଜଣେ ଆହୁରି ବିଦ୍ରୋହୀ ବ୍ୟକ୍ତିତ୍ୱ ଥିଲେ, ଏଥିରେ ସନ୍ଦେହ ନାହିଁ । ତାଙ୍କର ବିଦ୍ରୋହ ଘୋଷଣା 'କଳିଙ୍ଗ-ଭାରତୀ' ଓ 'ଗ୍ରନ୍ଥ-ସାହିତ୍ୟ-ସମାଜ' ପ୍ରତିଷ୍ଠାରେ ରୂପ ପାଇଥିଲା । ସେହି ଅନୁଷ୍ଠାନ ଓ ତାଙ୍କର ଅନୁରକ୍ତ ସହକର୍ମୀମାନେ ତାଙ୍କର ଲକ୍ଷ୍ୟ ଅନୁସାରେ ଅତୀତ ସହିତ ବର୍ତ୍ତମାନର ସ୍ୱର୍ଣ୍ଣସେତୁ ରଚନା କରିପାରିଲେ ବିଚ୍ଛନ୍ଦଙ୍କର ଉଦ୍ଦେଶ୍ୟ ସଫଳ ହେବ ।



# ସ୍ମୃତି-ତର୍ପଣ

ଅଧ୍ୟାପକ **ଶ୍ରୀ ରଜତକୁମାର କର**, ଏମ୍. ଏ.

[ ଗୀତ—ଲେଖ ]

(୧)

କର ମୋର ଯାଏ ଥରି ନ ପାରେ ଲେଖନୀ ଧରି
ଲେଖି ବଖାଣିବା ଭାଷା ଆସଇ ନାହିଁ
ମୋର ସାହିତ୍ୟ ଜୀବନ- ବନ୍ଧାଣୀ ସେ ମହାପ୍ରାଣ
କି ଗାଇବି ତାଙ୍କ ଗୁଣ ଶକତି [redacted] ?
ଯେ ରତନ ଯାଇଛି ହଜି
ଭଜିଲେ ଖୋଜିଲେ ଆଉ କି ହେବ ଆଜି ।

(୨)

ଓଡ଼ିଶୀ ଛାନ୍ଦ ସଙ୍ଗୀତ ପାଲା, ଗୋଟିପୁଅ ନୃତ୍ୟ
କାନ୍ଦଣା, ଦାସକାଠିଆ, ଢଗବଚନ,
ପିଠାଖିଆ, ବେଶଭୂଷା ଚିତାପକା, ହାର ଓଷା
ଏସବୁରେ ଜାତିପ୍ରାଣ କଲା ସନ୍ଧାନ
ନାହିଁ ସେହି ଦୀପ୍ତ ନୟନ
କାହାବଳେ ହେବ ଆଉ ଦିବ୍ୟ-ଦର୍ଶନ ।

(୩)

କଳାପ୍ରାଣ ଏହି ଜାତି ଅଛି ତା ସଙ୍ଗୀତ-ପ୍ରୀତି
କହି ଏହି କଥା ନିତି ଦେଶପୁରରେ
ସାଂସ୍କୃତିକ ଜାଗରଣ ଆଣିବାକୁ କରି ପଣ
ଭସାଇଲା ଦେଶସାରା ରସ - ସରିତେ
[redacted]କ ଦିଗ-ଦର୍ଶକ
ମିଳିବ କି ଝୁରୁଥିଲେ କାଳକାଳକ ।

(୪)

ସଙ୍ଗୀତକଳା ମାଧୁରୀ ଏ ଜାତି ଗଲା ପାଶୋରି
ବିଦେଶୀଙ୍କୁ ଅନୁସରି ଲେଖନୀ ଚଳେ
ପ୍ରାଚୀନ ଛାନ୍ଦେ ନୂତନ ଭାବ ପ୍ରକାଶେ ଯତନ
କଲ ଗଢ଼ି ଅନୁଷ୍ଠାନ ଶିଷ୍ୟଙ୍କ ମେଳେ
ମିଳିତ ସାହିତ୍ୟ-ସାଧନା
ପାଇଁ ଏବେ କିଏ ଆଉ ଦେବ ପ୍ରେରଣା ?

(୫)

ଦେଶ ସୀମା ସଂରକ୍ଷଣ ପାଇଁ ହୁଏ କେତେ ରଣ
ଇତିହାସ ଗାଏ ଗୁଣ ବୀର ସେନାର
ସାହିତ୍ୟ-ସଂସ୍କୃତି ପାଇଁ କରିଥିଲ ସେ ଲଢ଼ାଇ
କୁହ ଆଜି ଦେଶଭାଇ କି ପ୍ରାପ୍ୟ ତାର
ରଥପରୁ ପଡ଼ିଛି ଟଳି
ମୁଦିଲ ନୟନ ଆଉ ନ ହେବ ଖୋଲି ।

(୬)

ମନପ୍ରାଣ ଖୋଲି ହସ ନିଜ ଭୁଲି ଭାବାବେଶ
ରସଭରା ଭାଷା ସାରସ୍ୱତ ଜୀବନ
ଅତୀତ-କୀର୍ତ୍ତି କେତନ ତୋଳିବାର ଅଭିମାନ
କେଶରୀ ସମ ଗର୍ଜନ ହେଲ ସପନ
କଳିଙ୍ଗ-ଭାରତୀ-କାନନ
ମନୋରମ ପ୍ରସୂନ ହୋଇଲ ମଳିନ ।



# ବିଚ୍ଛନ୍ଦଚରଣଙ୍କ ନସ୍ୟ

## ଫତୁରାନନ୍ଦ

ଭଞ୍ଜୀୟ ସାହିତ୍ୟ ଛଡ଼ା ଅନ୍ୟ ଯେ କୌଣସି ସାହିତ୍ୟ ଚର୍ଚ୍ଚା କଲେ ଠେଙ୍ଗା, ଭଞ୍ଜ-କବିତା ଛଡ଼ା ଅନ୍ୟ କୌଣସି କବିତା ପଢ଼ିଲେ ଠେଙ୍ଗା, ଶୁଣିଲେ କାନମୋଡ଼ା, ଭଞ୍ଜ-କବିତାକୁ ବ୍ୟଙ୍ଗ କଲେ ମୁଣ୍ଡ କାଟ; ଅର୍ଥାତ୍ ଗୋଷ୍ଠୀରୁ ବହିଷ୍କାର। ଭଞ୍ଜେତର ସାହିତ୍ୟ ଅନୁଶୀଳକମାନଙ୍କୁ ଗୋଷ୍ଠୀର ସୀମା ବି ସ୍ପର୍ଶ କରିବାକୁ ବାରଣ। ଏହିସବୁ କଠୋର ବ୍ୟବସ୍ଥାମାନ କଳିଙ୍ଗ-ଭାରତୀର ନାୟକ ସ୍ୱର୍ଗତ ବିଚ୍ଛନ୍ଦଚରଣଙ୍କ-ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା ବୋଲି ଭଞ୍ଜ-ସାହିତ୍ୟ-ବିରାଗୀମାନଙ୍କଠାରୁ ସାଧାରଣତଃ ଶୁଣିବାକୁ ମିଳିଥାଏ। ବହୁ ସାହିତ୍ୟପ୍ରେମୀ ମଧ୍ୟ ଏଥିରେ ନାକ ଟେକୁଥିବାର ଦେଖାଯାଉଥିଲା। କିନ୍ତୁ ସବୁଆଡ଼ୁ ଗୋଟେଇ-ପୋଟେଇ ଦେଖିଲେ ବିଚ୍ଛନ୍ଦବାବୁଙ୍କର ଏତାଦୃଶ କାର୍ଯ୍ୟକଳାପରେ ଯଥାର୍ଥତା ଥିଲା ବୋଲି ବେଶ୍ ହୃଦୟଙ୍ଗମ କରାଯାଇପାରିବ। ପରିସ୍ଥିତିର ଗୁରୁତ୍ୱ ଅନୁଯାୟୀ ଦଣ୍ଡର ତାରତମ୍ୟ ଘଟିଥାଏ। ଯେଉଁ ସମୟରେ ବିଚ୍ଛନ୍ଦବାବୁ ଏପରି କଠୋର ଦଣ୍ଡର ବ୍ୟବସ୍ଥା କରୁଥିଲେ, ସେସମୟରେ ଓଡ଼ିଆ ସାହିତ୍ୟର ଘଡ଼ିସନ୍ଧି ଅବସ୍ଥା ପର୍ଯ୍ୟବେକ୍ଷଣ କଲେ ଦଣ୍ଡର ଆବଶ୍ୟକତା ବା ଅନାବଶ୍ୟକତା ଜଣାପଡ଼ିବ।

ଗୋଟିଏ ଦପ୍ତରରେ କାମ କରୁ କରୁ ଗୋଟିଏ କିରାଣି ଯଦି ଘୁମେଇ ପଡ଼ିଲା, ତେବେ ତାର ଉପରିସ୍ଥ କର୍ମଚାରୀ ଟିକିଏ ବିରକ୍ତ ହୋଇ "ହୋହା" ପାଟି କରିବ ଓ ଉଠେଇଦେବ। କିନ୍ତୁ ଯୁଦ୍ଧବେଳେ ଶିବିରରେ ପହରା ଦେଉଥିବା ସୈନିକ ଯଦି ଘୁମେଇପଡ଼େ, ତେବେ ତାକୁ ସଙ୍ଗେ ସଙ୍ଗେ ମୃତ୍ୟୁଦଣ୍ଡ। ଏ ଦୁଇ ଘୁମା ଭିତରେ କି ଆକାଶ-ପାତାଳ ପ୍ରଭେଦ। ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ଏ ପାର୍ଥକ୍ୟ ଦେଖା-ଦେଇଥାଏ। ଭଞ୍ଜଯୁଗ ଓ ଆଧୁନିକ ଯୁଗରେ ଓଡ଼ିଆ ସାହିତ୍ୟର ପରିସ୍ଥିତି ବର୍ତ୍ତମାନ ଦେଖାଯାଉ। ସେଯୁଗରେ ସାହିତ୍ୟର ମହାରଥୀଗଣ ସ୍ୱୀୟ କଠୋର ସାଧନା ଓ ଅଧ୍ୟବସାୟ ଫଳରେ ଓଡ଼ିଆ ସାହିତ୍ୟକୁ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ଊର୍ଦ୍ଧ୍ୱରେ ରଖି ଐଶ୍ୱର୍ଯ୍ୟ-ଦୃପ୍ତ ବିରାଟ ସଂସ୍କୃତ ସାହିତ୍ୟର ସମକକ୍ଷ କରାଇ-ପାରିଥିଲେ। କେବଳ ସେତିକି ନୁହେଁ; ସ୍ଥାନେ ସ୍ଥାନେ ସଂସ୍କୃତ ସାହିତ୍ୟକୁ ଟପାଇ ଦେଇପାରିଥିଲେ। ଓଡ଼ିଆ ଜାତିର ପ୍ରକୃତିଗତ ସହନଶୀଳତା ଓ ଅନ୍ୟ ପ୍ରତି ଉଦାରତାଗୁଣ ଯୋଗୁ ସେତେବେଳେ କେହି ଓଡ଼ିଆ ସାହିତ୍ୟକୁ ଜବରଦସ୍ତି ଅନ୍ୟମାନଙ୍କ ଉପରେ ଲଦି ଦେବାର ଅପଚେଷ୍ଟା କରୁ ନ ଥିଲେ, କି ଓଡ଼ିଆ ଭାଷାରୁ ଅନ୍ୟ ଏକ ଭାଷାର ଉତ୍ପତ୍ତି ବୋଲି କହି ନିଜର ଅବିବେକତା ଓ ମୂର୍ଖତା ଦେଖାଉ ନଥିଲେ।

ଓଡ଼ିଆ ସାହିତ୍ୟର ସେହି ସୁବର୍ଣ୍ଣଯୁଗ-ବେଳେ ଯଦି କେହି ବିଚ୍ଛନ୍ଦବାବୁଙ୍କ ନସ୍ୟ ପ୍ରଚଳନ କରାଇବାକୁ ଚେଷ୍ଟା କରିଥାଆନ୍ତେ, ତେବେ ତାଙ୍କୁ ପାଗଳ କହି ଲୋକେ ଏହା କରାଇବାରେ ପ୍ରବଳ ବାଧା ଦେଇଥାଆନ୍ତେ। କିନ୍ତୁ କ୍ରମେ ପରିସ୍ଥିତିର ପରିବର୍ତ୍ତନ ଘଟିଲା।

କାଳର ଅଲଙ୍ଘ୍ୟ ନିୟମାନୁଯାୟୀ କ୍ରମେ ଏ ସୁବର୍ଣ୍ଣ-ଯୁଗର ଅବସାନ ଘଟିଲା। ଦାରିଦ୍ର୍ୟଯୋଗୁ ସାହିତ୍ୟିକ-ମାନେ କଠୋର ସାଧନାରେ ବ୍ରତୀ ନ ହୋଇ ସେପ୍ରକାର ସାହିତ୍ୟ ସୃଷ୍ଟି କରିପାରିଲେ ନାହିଁ। ପାଣି ବାଧାହୀନ ପଥରେ ନିମ୍ନଗାମୀ ହେଲାପରି ଓଡ଼ିଆ ସାହିତ୍ୟ ଉଚ୍ଚସ୍ଥାନରୁ ଖସିଆସିଲା। ଏହାର ସୁଯୋଗ

ନେଇ ଇଂରାଜୀ ସାହିତ୍ୟମୁଖାପେକ୍ଷୀ ବଙ୍ଗ ସାହିତ୍ୟିକମାନେ ଓଡ଼ିଆ ସାହିତ୍ୟକୁ ଲୋପ କରିଦେବାକୁ ବସିଲେ । ବହୁ ଖ୍ୟାତନାମା ବଙ୍ଗୀୟ ସାହିତ୍ୟିକ ସେମାନଙ୍କ ଉଦ୍ଧତ, ଅସହିଷ୍ଣୁ ଓ ଉଚ୍ଛୃଙ୍ଖଳ ଲେଖାରେ ଓଡ଼ିଆ ଜାତିର ସାହିତ୍ୟ, ସଂସ୍କୃତି ଓ ଅର୍ଥନୀତି ଉପରେ ଧାରାବାହିକ ଆକ୍ରମଣ ଚଳାଇଲେ । ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା, ଏ ଜାତିଟାକୁ ଲୋପକରିଦେବା । ଜାତିର ପିଣ୍ଡ ହେଲା ଭାଷା; ତେଣୁ ଭାଷା ଓ ସାହିତ୍ୟ ଉପରେ ପ୍ରବଳ ଆକ୍ରମଣ ଚାଲିଲା । ଏଥିରେ ସମ୍ପୂର୍ଣ୍ଣ ଅକୃତକାର୍ଯ୍ୟ ହେଲେ ସୁଦ୍ଧା ଏପର୍ଯ୍ୟନ୍ତ ବି ଏହିମାନଙ୍କପରି କେତେକ ଅବିବେକୀ ସାହିତ୍ୟିକ ପୂର୍ବପରି ଅପଚେଷ୍ଟା ଚଳାଇଲାଗିଛନ୍ତି । ମୁଷ୍ଟିମେୟ ତଥାକଥିତ କେତେ ଜଣ ଓଡ଼ିଆ ସାହିତ୍ୟିକ ଇଂରାଜୀ ସାହିତ୍ୟର ଲାଞ୍ଜ ବଙ୍ଗଳା ସାହିତ୍ୟରୁ କିଛି କିଛି ଚୋରି କରି ଓଡ଼ିଆ ସାହିତ୍ୟ ଭିତରେ ଭର୍ତ୍ତି କରିବାର ଚେଷ୍ଟା ଯେ କରୁନାହାନ୍ତି ତାହା ନୁହେଁ, ଏପ୍ରକାର ଅପକର୍ମ ହିଁ ବଙ୍ଗୀୟ ଲେଖକ ତଥା ସମାଲୋଚକମାନଙ୍କୁ ପ୍ରକାରାନ୍ତରେ ସାହାଯ୍ୟ କରିଛି ଓ କରୁଛି ଏବଂ ଏଥିର ନିରାକରଣ ନ ହେଲେ ଭବିଷ୍ୟତରେ ମଧ୍ୟ କରିବ ।

ଦଣ୍ଡକାରଣ୍ୟ ନାମରେ ଓଡ଼ିଶାର ଏକ ବିସ୍ତୃତ ଭୂଖଣ୍ଡ ଦ୍ୱିତୀୟ ବଙ୍ଗ ହେବାକୁ ଯାଉଛି । ଦେଶଦ୍ରୋହୀ ଓ ଜାତିଦ୍ରୋହୀ ସ୍ୱାର୍ଥାନ୍ଧ ବ୍ୟକ୍ତି ଲୋକଙ୍କପାଖରେ ଏହାକୁ ଲୁଚାଇବାକୁ ଆପ୍ରାଣ ଚେଷ୍ଟା କରିବାକୁ ଛାଡ଼ୁନାହାନ୍ତି । ବଙ୍ଗୀୟ କର୍ମଚାରୀମାନେ ଶାସନର ସବୁକ୍ଷେତ୍ରରେ ଖେଳିଯାଇ ଅଧିକରୁ ଅଧିକ ପ୍ରଭାବ ବିସ୍ତାରରେ ଲାଗିଗଲେଣି । ନିକଟରେ ବଙ୍ଗ ପତ୍ର-ପତ୍ରିକାମାନଙ୍କରେ ଓଡ଼ିଆଭାଷା ବଙ୍ଗଭାଷାରୁ ଉତ୍ପନ୍ନ ବୋଲି ପ୍ରତିପାଦନ କରିବାକୁ ଏକ ଧାରାବାହିକ ଉଦ୍ୟମ ଲାଗିଗଲାଣି । ଜାତିର ପିଣ୍ଡ ଭାଷାକୁ ନଷ୍ଟ କରିଦେଇ ଓ ଦୁଇ କଡ଼ୁ ଅର୍ଥାତ୍ ପ୍ରଥମ ଓ ଦ୍ୱିତୀୟ ବଙ୍ଗ (ଦଣ୍ଡକାରଣ୍ୟ) ଆଡ଼ୁ ଛଣ୍ଡୁଆସି ଆକ୍ରମଣରେ ଓଡ଼ିଆ ଜାତିକୁ ଲୋପ କରିଦେବାପାଇଁ ଏକ ନେପୋଲିୟନୀୟ ଅଭିଯାନ ଆରମ୍ଭ ହୋଇଯାଇଛି ।

ଏପରି ଅବସ୍ଥାରେ ଓଡ଼ିଆ ଜାତି ପ୍ରାଣମୂର୍ଚ୍ଛା ଆତ୍ମରକ୍ଷା ସଂଗ୍ରାମରେ ଲିପ୍ତ । ଜରୁରି ଅବସ୍ଥାକୁ ସମ୍ଭାଳିବାକୁ ହେଲେ କଠୋର ବ୍ୟବସ୍ଥାମାନ କରିବାକୁ ହୁଏ, ଅସାମାଜିକ ଗୋଠଛଡ଼ା ବ୍ୟକ୍ତିମାନଙ୍କୁ ଦମନ କରିବାକୁପଡ଼େ । ସେମାନଙ୍କୁ ଏସବୁ ବ୍ୟବସ୍ଥା ଯେତେ ଠିକ୍ ହେଉନା କାହିଁକି; ଜାତିପ୍ରେମୀ, ଚିନ୍ତାଶୀଳ ବ୍ୟକ୍ତିମାନେ ସର୍ବଦା ଏହାକୁ ସ୍ୱାଗତ କରନ୍ତି । ଏପରି ସଂକଟପୂର୍ଣ୍ଣ ଅବସ୍ଥାରେ ଜାତିର ମୂଳଦୁଆ ଭାଷାକୁ ବଞ୍ଚାଇ ରଖିବାପାଇଁ ସ୍ୱର୍ଗତ ବିଚ୍ଛନ୍ଦ ଚରଣଙ୍କର ପ୍ରଥମୋକ୍ତ ନିଷ୍ଠା ସ୍ପୃହଣୀୟ କି ନା, ତାହା ଓଡ଼ିଆ ଜାତିର ବିଚାର୍ଯ୍ୟ ।



# ଛନ୍ଦମୟ ଜୀବନ ତବ ମୂର୍ଚ୍ଛନାରେ ଭର

ଅଧ୍ୟାପକ **ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର,** ଏମ୍. ଏ.,

ଛନ୍ଦମୟ ଜୀବନ ଆହା
ଅନ୍ତିମେ କି ପଡ଼ିଲା ଝରି,
ମୃତ୍ୟୁ-ତୀରେ ଶାନ୍ତି ପାଇଁ
ଲାଗିଲା କିବା ଜୀବନ-ତରୀ ।

ମରଣଜୟୀ ମନ୍ତ୍ର ଯେତେ
ତୋଳିଲ ଆହେ କର୍ଣ୍ଣଧାର,
ସେସବୁ ଆଜି କାହାର କଣ୍ଠେ
ଉଚ୍ଛୁଳାଇ ଥରକୁ ଥର ।

ଏଠାରେ ଏତେ ବନ୍ଧୁମେଳେ
ଆଉ କି ଭଲ ଲାଗିଲା ନାହିଁ,
ବୁଝିଲ କିବା ଅନ୍ତରରେ
ଜଗତେ ଆଜି ସତ୍ୟ ନାହିଁ ।

ତେଣୁ କି ତୁମେ ସଂଗୋପନେ
ଅନ୍ତରାଳେ ଗଲ ହେ ଚାଲି,
ଚାହିଁଲ ନାହିଁ ପରତେ ହେଲେ
ନିଜକୁ ନିଜେ ଗଲ ହେ ଭୁଲି ।

ଏଠାରେ ଏତେ ହିଂସା କୁଟ
ଜଗତବାସୀ ଛଳନା ଜାଲ,
ମଣିଷ ଆଜି ମଣିଷ ପାଇଁ
ଖୋଳି ବସିଛି କବର ଖାଲ ।

ଏସବୁ ଦେଖି କବି କି ତୁମେ
ବିଶ୍ୱର କଲ ଅନ୍ତରାଳେ,
ଜଗତ ଆଜି ଦ୍ୱନ୍ଦ୍ୱମୟ
ଝୁଲଇ ଅସି ସବୁରି ଗଳେ ।

ମିନତି ମୋର ଯେନ ହେ କବି
ତୁମରି ଏହି ସମାଧିପରେ,
ଗୋଲାପ-ଫୁଲ ହେଲା ହେ ହସି
ଅନ୍ତର ମୋ ମୁଗ୍‌ଧ କରେ ।

ହେ କବି ତୁମେ କବିତାସୁରେ
ଚିତ୍ରଭାନୁ ଚିତ୍ର ଲେଖି,
ଲାବଣ୍ୟରେ ପଠାଇଅଛ
ପ୍ରିୟତମରେ ଆସିବ ଦେଖି ।

ଦେଖା କି ତାର ପୂର୍ଣ୍ଣହେଲା
ପୂର୍ଣ୍ଣହେଲା ପ୍ରଣୟ ତାର,
କହ ହେ କବି କବିତାସୁରେ
ଯାତ୍ରୀ ଡାକେ ବାରକୁ ବାର ।

ବିଦାୟୀ କବି ! ବିଦାୟ ତୁମେ
ନେଇ କି ପାର ଆମରି ପାଶୁଁ,
ତୁମରି ଆଜି ମହାଯାତ୍ରା
ସକଳେ ଢାଳି ଲୋତକେ ଭାସୁ ।

ଯେନ ହେ କବି ! ପ୍ରଣାମ ମୋର
ଅଶ୍ରୁଭରା ସ୍ମୃତି ତବ,
ପାଖୁଡ଼ା ଝରି ସୁରଭି ଭରି
ଫୁଟୁ ସେ ଫୁଲ, ସେ ଗଉରବ ।



# ଆଉ କେହି କହିବେ ନାହିଁ

ଅଧ୍ୟାପକ **ଶ୍ରୀ ହୃଦାନନ୍ଦ ରାୟ,** ଏମ୍. ଏ.

( ସମ୍ପାଦକ, କଳିଙ୍ଗ-ଭାରତୀ )

ଜୀବନର ବିକାଶୋନ୍ମୁଖ ଅଠର ବରଷ ଯାହାଙ୍କ ପାଦତଳେ ବସି କଟାଇଦେଇଛି, ଯାହାଙ୍କୁ ଗୁରୁଦେବ-ରୂପେ ପାଇ ମୋର ସୌଭାଗ୍ୟର ସୀମା ନ ଥିଲା, ଯାହାଙ୍କର ଅଙ୍ଗୁଳି-ନିର୍ଦ୍ଦେଶ ମାତ୍ରକେ ମୋର ସ୍ୱଭାବ-ନିଷ୍କ୍ରିୟ ସ୍ନାୟୁମଣ୍ଡଳରେ ଉଦ୍ଦାମ ଅଗ୍ନିକୁଆର ଛୁଟୁଥିଲା, ଯାହାଙ୍କ ପ୍ରତିଷ୍ଠାପିତ ଆଦର୍ଶର ବାର୍ତ୍ତା ଘେନି ମୁଁ ପ୍ରଚଣ୍ଡ ଘୂର୍ଣ୍ଣିବାତ୍ୟାଭଳି ବୁଲୁଥିଲି, ଜୀବନର ଜୟ-ପରାଜୟର କଥା ଯାହାଙ୍କୁ ଶୁଣାଇବାଲାଗି ମୁଁ କାଶୀରୁ ଧାଇଁଥିଲି କଟକ, ମୋର ସମଧର୍ମୀ ସହକର୍ମୀଗୋଷ୍ଠୀ ଯାହାଙ୍କୁ କେନ୍ଦ୍ର କରି କଳିଙ୍ଗ-ଭାରତୀ ପରିବାରର ନିବିଡ଼ ଆତ୍ମୀୟତାରେ ବୁଡ଼ିରହିଥିଲେ, ସ୍ୱଜନ ସୁହୃଦଙ୍କୁ ପାଶୋରି ଦେଇ ଯାହାଙ୍କୁ ଆମ୍ଭେମାନେ ଆତ୍ମାର ଆତ୍ମା ବୋଲି ଗ୍ରହଣ କରିଥିଲୁ, ସେହି ଗୁରୁଦେବ ବିଚ୍ଛନ୍ଦଚରଣ ଅପରିବର୍ତ୍ତିତ ରୋଗଶଯ୍ୟାରେ ଶୋଇ କହିଥିଲେ, "ମୋଠୁଁ ଶୁଣି ଥା, ଏହା ତୋତେ ଆଉ କେହି କହିବେ ନାହିଁ।" ଆଜି ବୁଝୁଛି, ଆଉ କେହି କହିବେ ନାହିଁ।

୧୯୪୩ ମସିହା ଅଗଷ୍ଟ ମାସରେ ଶ୍ରୀରାମଚନ୍ଦ୍ର ଭବନରେ ପୂଜ୍ୟପାଦ ବିଚ୍ଛନ୍ଦଚରଣଙ୍କୁ **ମୁଁ** ପ୍ରଥମ ଥର-ପାଇଁ ଦେଖିଲି। ଅଫିସରୁ ଫେରି ଘରକୁ ନ ଯାଇ ପ୍ରତିଦିନ ସେ ଶ୍ରୀରାମଚନ୍ଦ୍ର ଭବନରେ ରାତି ଆଠଟା-ପର୍ଯ୍ୟନ୍ତ ଏକୁଟିଆ କାଗଜପତ୍ର କାମ କରୁଥାନ୍ତି। ଘରକଥା ମନେ ନ ଥିବା, ନିଜର ଦେହର ପ୍ରୟୋଜନପ୍ରତି ସନ୍ତତଃ ଉଦାସୀନ, ସଙ୍ଗ-ସଖାବିବର୍ଜିତ ଏବଂ କର୍ମନିରତ ବ୍ୟକ୍ତିଙ୍କୁ ଦେଖି ମୋ ବାଳୁତ ଚପଳ ମନରେ ଦିନକୁ ଦିନ ବିସ୍ମୟ ଜାତ ହେଉଥାଏ। ମୁଁ ଭାବୁଥିଲି, ଏ ଗୋଟିଏ କର୍ମୀ। କର୍ମ କରି କରି ଏହାର ଜୀବନ ନିରର୍ଥକ ହେବ। ପିଲାଦିନୁ କର୍ମପ୍ରତି ମୋର ଆଦର ନ ଥାଏ। ଭାବରାଜ୍ୟରେ କଳାକାରସୁଲଭ ମୁକ୍ତ ଆତ୍ମାର ବିହାରକୁ ମୁଁ ପସନ୍ଦ କରେ ବୋଲି ବାପା ମୋତେ କହନ୍ତି "ଅଳସୁଆ"। ସେତେବେଳକୁ ମୋତେ ତେର ବର୍ଷ ବୟସ। କୌତୂହଳବଶତଃ ନିକଟକୁ ଯାଇ ତାଙ୍କୁ ଥରେ ଦେଖିଆସିଲି। ନିବିଷ୍ଟଚିତ୍ତରେ ଉତ୍କଳ ସାହିତ୍ୟ-ସମାଜର କାଗଜପତ୍ର କାମ ସେ କରୁଥାନ୍ତି। ପରିହାସରେ ବନ୍ଧୁମାନଙ୍କୁ କହିଛି, କର୍ମୀଟାଏ ଦେଖିବ ତ ଆସ। ବନ୍ଧୁମାନଙ୍କୁ ଦୂରରୁ ଦେଖାଇ ଦେଉଥିଲି। ପରେ ଯେତେବେଳେ ଏସବୁ କଥା ମୁଁ ଗୁରୁଦେବଙ୍କୁ କହିଲି, ସେ ହସି ହସି କହିଥିଲେ, ଅନ୍ତରକୁ କବିତାରେ ମଜାଇ ରଖି ବାହାରକୁ ପାଷାଣ-କଠୋର କରିହୁଏ। କର୍ମ, କବିତାର ଅନ୍ତରାୟ ନୁହେଁ। ଯେ କଳାକାର, ସେ ଭାବବିଳାସୀ ହେଲେହେଁ ଧୁରନ୍ଧର କର୍ମଦକ୍ଷ ହୋଇପାରେ। ବରଂ କଳାକାରର ସୂକ୍ଷ୍ମଦୃଷ୍ଟି କର୍ମନୈପୁଣ୍ୟର ସହାୟକ।

ତାଙ୍କରି ନିର୍ଦ୍ଦେଶରେ ୧୯୪୪ ମସିହା ମଇ ମାସ ୧୭ ତାରିଖରେ ଉତ୍କଳ ଯୁବ-ସାହିତ୍ୟ-ସମାଜ ପ୍ରତିଷ୍ଠା କରି ଭଞ୍ଜ-ଜୟନ୍ତୀ ଆନ୍ଦୋଳନର ଅୟୁମାରମ୍ଭ କଲୁ। ମୁଁ ଆନୁଷ୍ଠାନିକ ଦାୟିତ୍ୱ ତୁଲାଇବାଭାର ବହନ କରି "କର୍ମୀ" ହେଲି। ସେଦିନର ଅମିତ ଉତ୍ସାହ, ନିରଳସ କର୍ମଠତା, ଅଦମ୍ୟ ଉଦ୍ୟମ, ପ୍ରାଣମୂର୍ଚ୍ଛା ସ୍ୱାର୍ଥତ୍ୟାଗ କଥା ମନେ ପଡ଼ିଲେ ମୋତେ ନିଜକୁ ବିସ୍ମୟ ଲାଗୁଛି।

ହିନ ନାହିଁ, ରାତ୍ର ନାହିଁ, ଆମ୍ଭେମାନେ କଳିଙ୍ଗଭାରତୀ ଆଦର୍ଶରେ ପାଗଳ ହୋଇ ରହିଥିଲୁ । ଆମକୁ ଦେଖି ଗୁରୁଦେବ କହୁଥିଲେ, "ମୋ ହାତବାରଣିମାନେ ଅସାଧାରଣ ଶକ୍ତିର ଆଧାର ।"

'ପ୍ରତ୍ୟବାୟ, ପ୍ରତିରୋଧର ଘନଘଟା ଘନୀଭୂତ ହୋଇଆସିଲା । ପାରିପାର୍ଶ୍ୱିକ ଅବସ୍ଥା ତରଙ୍ଗାକୁଳ ସିନ୍ଧୁପରି ବିକ୍ଷୋଭିତ ହେବାକୁ ଲାଗିଲା । କେଉଁ ମୁହୂର୍ତ୍ତରେ ଘରଦ୍ୱାର ଗୁଡ଼ାଇବାକୁ ପଡ଼ିବ, ତାହାର ମଧ୍ୟ ସ୍ଥିରତା ରହିଲା ନାହିଁ । ଏହି ଅଗ୍ନିପରୀକ୍ଷା ମଧ୍ୟରେ ଜଣକୁ ଜଣ ସହକର୍ମୀ ଉତ୍ତୀର୍ଣ୍ଣ ହେବାକୁ ଲାଗିଲେ । ସମସ୍ତଙ୍କଠାରୁ ଅଧିକ କାଳ ନିର୍ଯାତନା ମଧ୍ୟରେ ବୁଡ଼ି ଉଠିଥାଏ ବୋଲି ମୁଁ କଳିଙ୍ଗଭାରତୀ ପରିବାରର "ବଡ଼ଭାଇ" ହୋଇଥାଏ । ପ୍ରାଣପାତ କରି ଆଦର୍ଶକୁ ରକ୍ଷା କରିବୁ—ଏହି ମହାବ୍ରତରେ ଉଦ୍‌ବୋଧିତ ହୋଇ କଳିଙ୍ଗଭାରତୀ ସାଧକଗୋଷ୍ଠୀ ଦିନକୁ ଦିନ ପ୍ରବଳ ହୋଇଉଠିଲେ । ଅପ୍ରତିହତ ବିକ୍ରମରେ କଳିଙ୍ଗ-ଭାରତୀ ସାଧକଗୋଷ୍ଠୀର ପରିସର ବୃଦ୍ଧି ହେଲା । ଓଡ଼ିଶାର ବହୁ ଅଞ୍ଚଳରୁ ଉତ୍ସାହୀମାନେ ଯୁବକ ଗୁରୁଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ହେଉଥାନ୍ତି । ଗୁରୁଦେବ ବରାବର କହନ୍ତି, "ମୋପ୍ରତି ବ୍ୟକ୍ତିଗତ ଅନୁରକ୍ତି ଅପେକ୍ଷା ମୁଁ ମୋ ଆଦର୍ଶପ୍ରତି ଅନୁରକ୍ତିକୁ ଅଧିକ ମନେକରେ ।" କିନ୍ତୁ ଏହି ଦୁଇ ଅନୁରକ୍ତିର ସୀମାରେଖା କେଉଁଠି ? ଗୁରୁଦେବଙ୍କପ୍ରତି କଳିଙ୍ଗ-ଭାରତୀ ପରିବାରରେ ବ୍ୟକ୍ତିଗତ ଓ ଆଦର୍ଶଗତ ଅନୁରକ୍ତିର ଭେଦ ନ ଥିଲା ।

ଗୁରୁଦେବ କହୁଥିଲେ, "ଉତ୍କଳର ସାଂସ୍କୃତିକ ଜୀବନର ପୁନର୍ଜାଗରଣ ପ୍ରୟୋଜନ । ନିଜର ବିପୁଳ ଐତିହ୍ୟପ୍ରତି ଅନବହିତ ହୋଇ ଯେଉଁ ଇଂରାଜ-ଶିକ୍ଷିତମାନେ ବିପଥଗାମୀ ହୋଇଛନ୍ତି, ସେମାନଙ୍କ ବିଚାରଧାରା କଳୁଷିତ ହୋଇପଡ଼ିଅଛି । ସେହି କଳୁଷିତ ଚିନ୍ତା-ପ୍ରବାହକୁ ଅତନ୍ଦ୍ରିତଭାବରେ ପ୍ରତିରୋଧ କରିବାକୁ ହେବ । କୋଣାର୍କର ଭାସ୍କର୍ଯ୍ୟ ଓ ଭଞ୍ଜସାହିତ୍ୟର ଲଳିତ-ଚାତୁର୍ଯ୍ୟ ଉତ୍କଳୀୟ ଜାତୀୟ-ଜୀବନର ଦୁଇଟି ପରମପ୍ରକାଶ । କଳା-ସଙ୍ଗୀତ-ମଞ୍ଜୁଳ ଉତ୍କଳୀୟ କୃଷ୍ଟିର ଏ ଦୁଇଟି ବିଶିଷ୍ଟ ଧାରା । କୋଣାର୍କ ପ୍ରସ୍ତର ଶିଳ୍ପରେ ଭଞ୍ଜ-ସାହିତ୍ୟ; ଭଞ୍ଜ-ସାହିତ୍ୟ ଲିପିଶିଳ୍ପରେ କୋଣାର୍କ । ପୁରୀ, ଭୁବନେଶ୍ୱର, ବିରଜାକ୍ଷେତ୍ରର ମନ୍ଦିରମାନଙ୍କରେ ବିକଶିତ କଳାର ପରିପୂର୍ଣ୍ଣତା ଫୁଟିଛି କୋଣାର୍କରେ । ଦୀନକୃଷ୍ଣ, ଅଭିମନ୍ୟୁ, କବିବରଙ୍କ ସାରସ୍ୱତ ସୃଷ୍ଟିର ସାରଭୂତ ଆତ୍ମା ବିକଶିତ ହୋଇଛି ଭଞ୍ଜ-ସାହିତ୍ୟରେ । ଭଞ୍ଜ ଓ କୋଣାର୍କ ଅଭିନ୍ନଭାବରେ କଳାପ୍ରାଣ ଉତ୍କଳୀୟ କୃଷ୍ଟିର ଚରମ ପ୍ରକାଶ । ଉତ୍କଳୀୟ ଜାତୀୟ-ଜୀବନ କଳାମୟ, ସଙ୍ଗୀତମୟ, ଲୀଳାମୟ । ବୈଦେଶିକ କୃଷ୍ଟିର ଅସ୍ୱାଭାବିକ ପ୍ରଭାବ ଫଳରେ ଉତ୍କଳ-ଜୀବନରୁ ସରସତା, କଳାପ୍ରାଣତା, ସଙ୍ଗୀତମୟତା ଲୋପପାଇଯାଉଥିବା ତାଙ୍କୁ ମର୍ମେ ମର୍ମେ ଦଂଶନ କରୁଥିଲା । ସେଥିପାଇଁ ସେ ଗାଉଥିଲେ,

"ପ୍ରାଣ-ପ୍ରଚୁରତା ଏ ଦେଶେ ଆଉ
ନାହିଁଛି ନିଶ୍ଚିତ ସାଧିଛି ଦାଉ ।"

ଚିର ପ୍ରଫୁଲ୍ଲ, ପ୍ରାଣ-ପ୍ରଚୁର ଜୀବନର ଆଶା ଓ ଆନନ୍ଦବାଦ ଉତ୍କଳର ସ୍ୱାଭାବିକ ଦୃଷ୍ଟି । ଇଂରାଜୀ ଶିକ୍ଷାର ବିଷାକ୍ତ ବାୟୁମଣ୍ଡଳଠାରୁ ବହୁଦୂରରେ ରହୁଥିବା ତନ୍ୱୀ ପଲ୍ଲୀବଧୂକୁ ଉତ୍କଳୀୟ ଜାତୀୟ-ଜୀବନର ମୂଳ ଉତ୍ସରୂପେ ଦେଖି କବି ଲେଖିଥିଲେ—

"କଳାର ଅଶନ ସମ ବକ୍ଷେ ମଧୁବହି
ବକ୍ଷ ଭ୍ରମ କବି-ଶିଳ୍ପୀ ପ୍ରେରଣାର ଗେହ
କୋଣାରକ ଆଦରଣ
ଭଞ୍ଜ-କବିବର-ଗୀତ ଜୀବନ ସ୍ପନ୍ଦନ ।"

ଜୀବନକୁ ଶୁଷ୍କ କରି, ଗଦ୍ୟମୟ କରି, ରସହୀନ କରି ଯାପନ କରିବା ଯେ ଏକ ଭ୍ରାନ୍ତ ମନୋବୃତ୍ତି, ତାହା ସେ ବରାବର ଚେତାଇ ଦେଉଥିଲେ । ଉତ୍କଳର ସମୃଦ୍ଧ ଜୀବନ ଦିନକୁ ଦିନ ଅଭାବ, ଅନଟନ ପୀଡ଼ନରେ ଗଦ୍ୟମୟ ହେଉଥିବା ଲକ୍ଷ୍ୟ କରି ସେ କହୁଥିଲେ—

"ଭୋକବାପାଇଁ ନାହିଁ ଭୋଗିଣି ଅନ୍ନ
ଢାଙ୍କିବାପାଇଁ ଅଙ୍ଗେ ନାହିଁ ବସନ ।"

× × ×

"ମାଳଶଇଳନାଥ ହେଲେ ଦାରୁଣ
ନିରଙ୍କୁଶ ନିଯୁକ୍ତ କଲା ପୀଡ଼ନ ।"

× × ×

"ଘନ ଆସାର ସରି ଝରଇ ଲୁହ
ଘର ତେଜନ୍ତି ମାଆ, କେତେ ତୋ ପୁଅ ।
ଘଉଡ଼ିନିଏ ପେଟ ଦୂର ଦେଶକୁ
ଘରଣୀଏ ବାନ୍ଧନ୍ତି ପଥରେ ବୁକୁ ।"

ନିରସ ପ୍ରାଣ, ଉଦାସ ଅନ୍ତରରେ ସଙ୍ଗୀତ ଫୁଟିବ କିପରି ? ପ୍ରାଣପ୍ରଚୁରତା ଆସିବ କେଉଁଠୁ ? ଏଥିପାଇଁ ଲୋଡ଼ା ଜାଗରଣ । ଏଥିପାଇଁ ଜାତୀୟ ଜୀବନରେ ଆବଶ୍ୟକ ଆମୂଳଚୂଳ ପରିବର୍ତ୍ତନ । ତାଙ୍କର ବିଶ୍ୱାସ ଥିଲା, ଆମର ତପସ୍ୟା ଅଛି । ତଅପୋଷ୍ଠ ଦେଶରେ ଧନର ଅଭାବ ହେବ ନାହିଁ । କବି-କଞ୍ଜବନ ଭଞ୍ଜ-ଦେଶରେ ସଙ୍ଗୀତକଳାର ପଥ କିଏ ରୋଧ କରିପାରିବ ? ପୁରୀର ପଥୁରିଆ, କଟକର କାରିଗର, ଗାଁର ପଲ୍ଲୀବଧୂଙ୍କ ହସ୍ତଶିଳ୍ପରେ କୋଣାର୍କର ଚେର ବଞ୍ଚିଛି । ଉପଯୁକ୍ତ ପାଣି-ପବନ ମିଳିଲେ ତାହା ଦ୍ରୁମାୟିତ ହେବ । କଣ୍ଟିଲେ ବାସନ, ମାଣିଆବନ୍ଧୀ ଶାଢ଼ୀ, କଟକର ତାରକସି କାମ ବଞ୍ଚିଛି—ଅବଶ୍ୟ ବଞ୍ଚିବ । ନିଜର ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟକୁ ଆହୁତି ଦେଇ, ପ୍ରାଣପାତ କରି ଯେତେବେଳେ ତରୁଣସମାଜ ଜାଗ୍ରତ ହେବ, ସେନ୍ନୁ ବିପୁଳଶକ୍ତି-ପ୍ରବାହରେ ସବୁ ଦୁଃଖ-ଦୈନ୍ୟ ଭାସିଯିବ । ଉତ୍କଳରେ ସାଧକ, ତ୍ୟାଗୀ, ଆତ୍ମୋତ୍ସର୍ଗ ବ୍ରତୀ, ତେଜସ୍ୱୀ ଯୁବସମାଜର ଜାଗରଣ ଲାଗି ସେ କଳିଙ୍ଗଭାରତୀ ଆନ୍ଦୋଳନ ଚଳାଉଥିଲେ । ବର୍ଷକ ବାରମାସ ପ୍ରତିଦିନ ସନ୍ଧ୍ୟାପୂର୍ବରୁ ଦୁଇ ଘଣ୍ଟା ଓଗରପଡ଼ା ବାସଭବନରେ ତାଙ୍କର ଅଗ୍ନିମୟୀ ବାଣୀ ଝରୁଥିଲା । ତଦ୍‌ଗତମନ ଶିଷ୍ୟମଣ୍ଡଳୀ ତାହା ଶୁଣୁଥିଲେ । ମୁଁ ସ୍ପଷ୍ଟ ଅନୁଭବ କରୁଛି, ସେ ଅଗ୍ନିର ସ୍ଫୁଲିଙ୍ଗ ଆଜି ଓଡ଼ିଶାର ନାନା କ୍ଷେତ୍ରରେ ଉଡ଼ିବୁଲୁଛି ।

କି ଇଂରାଜୀ, କି ଓଡ଼ିଆ ଉଭୟ ଭାଷାରେ ଗୁରୁଦେବଙ୍କର ଅଲୌକିକ ପ୍ରବେଶ ଓ ଅଧିକାର ଥିଲା । କି ଗଦ୍ୟ, କି କବିତା—ଗୁନ୍ଥିଲେ ଉଭୟରେ ସେ ଦଖଲଦାର ଲେଖା ଲେଖିପାରୁଥିଲେ । ଥରେ ଥରେ କହନ୍ତି, ଅନ୍ୟମାନଙ୍କପରି ସାହିତ୍ୟ ସୃଷ୍ଟିରେ ନିଜର ସମୟ ବିନିଯୋଗ କରୁଥିଲେ ସେ ବହୁ ପୃଷ୍ଠା ଲେଖି-ସାରନ୍ତେଣି । କିନ୍ତୁ ଲେଖା ପ୍ରସ୍ତୁତ କରିବା ଅପେକ୍ଷା ଲେଖକ ପ୍ରସ୍ତୁତ କରିବାକୁ ସେ ଦେଶସେବାର ଉନ୍ନତତର ସରଣୀ ବୋଲି ମନେ କରୁଥିଲେ । ସେ ସାହିତ୍ୟ-ସୃଷ୍ଟିକୁ ବିଳାସ କାବ୍ୟ ବ୍ୟବସାୟ ବା ସଉକ୍ ବୋଲି ଗ୍ରହଣ କରି ନ ଥିଲେ । ତାଙ୍କ ଦୃଷ୍ଟିରେ ଅତୀତ ପୁରୁଷଙ୍କ ଯୋଗ୍ୟ ଦାୟାଦ ହୋଇ, ବର୍ତ୍ତମାନ ଯୁଗର ପ୍ରତିନିଧିତ୍ୱ କରି ଭବିଷ୍ୟତ ଯୁଗପାଇଁ ଅକ୍ଷୟ ସମ୍ପଦ ସଞ୍ଚିଯିବା ଲେଖକର କର୍ତ୍ତବ୍ୟ । ପ୍ରାଚୀନର ସଂରକ୍ଷଣ ଓ ପ୍ରାଚୀନକୁ ମୂଳଭିତ୍ତି କରି ନବୀନର ସୃଷ୍ଟି ଲେଖକର ମୂଳମନ୍ତ୍ର ହେବା ବିଧେୟ । ସେ ଗାଇଛନ୍ତି—

"ସେକାଳ ବିପଞ୍ଚି ଏକାଳ ତାନ
ଯୋଗ ବିନା ଧନ୍ୟ ହାରୁଛି ମାନ ।"

ଯାହା ସତ୍ୟ, ଶିବ, ସୁନ୍ଦର ତାହାର ଚିତ୍ରାଙ୍କନ ହିଁ ସତ୍ ସାହିତ୍ୟ । ସତ୍ୟଦ୍ୱାରା ଅସତ୍ୟକୁ, ଶିବଦ୍ୱାରା ଅଶିବକୁ, ସୁନ୍ଦରଦ୍ୱାରା ଅସୁନ୍ଦରକୁ ପରାଜିତ କରି ଜୀବନପଥ ନିର୍ମାଣ କରିବାକୁ ହେବ । ସାହିତ୍ୟ ଜୀବନର ମୁକୁର । ତେଣୁ ସାହିତ୍ୟରେ ଅସତ୍ୟ, ଅଶିବ ଓ ଅସୁନ୍ଦରର ଛାୟା ଦେଖୁଥିଲେ, ନିର୍ମମଭାବରେ ସେ ତାହା ଆକ୍ରମଣ କରୁଥିଲେ । ସେ କହନ୍ତି, ଆପୋଷ ମିଳାମିଶା ଦୁର୍ବଳତାର ଲକ୍ଷଣ, ଅସତ୍ୟର ଆଶ୍ରୟଭୂମି । ସତ୍ୟଲାଗି ଅପ୍ରିୟ ହେବା ଶ୍ଳାଘନୀୟ । ସତ୍ୟକୁ ପ୍ରତିଷ୍ଠା କରିବା-ଲାଗି ପ୍ରୟୋଜନ ପଡ଼ିଲେ ଉଗ୍ରତା ଅଶୋଭନୀୟ ନୁହେଁ । ଭଗବାନଙ୍କ ନୃସିଂହ ଅବତାର ଏହାର ଉଦାହରଣ ।

ସାଂଘାତିକ ରୋଗଲାଗି ସାଂଘାତିକ ଚିକିତ୍ସା ଦରକାର (Drastic disease requires drastic treatment) । ସତ୍ୟଲାଗି ଅପ୍ରିୟ ହୋଇ ଫାଶୀ-ଖୁଣ୍ଟରେ ନ ଝୁଲିଲେ ସତ୍ୟର ପ୍ରତିଷ୍ଠା ହୁଏ ନାହିଁ । ଏଭଳି ପରିସ୍ଥିତିରେ ସବୁବେଳେ ଦଣ୍ଡଦାତାର ପରାଜୟ ଓ ଦଣ୍ଡିତର ବିଜୟ ହୋଇଥାଏ । ସେ କହୁଥିଲେ, ସିଦ୍ଧାନ୍ତ ବିଷୟରେ ମୋତେ ପରାଜିତ ନ କରି ମୋତେ ଯେ ଉଗ୍ର ବୋଲି ଅଭିହିତ କରିବ, ତହିଁରେ ମୁଁ ବିଚଳିତ ହେବି ନାହିଁ; ବରଂ ମୁଁ ଆହ୍ଲାଦିତ ହେବି । ଏଭଳି ଅକୁତୋଭୟ, ସତ୍ୟନିଷ୍ଠ, ବଳିଷ୍ଠ ବ୍ୟକ୍ତିତ୍ୱ ଯେ ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲି, ଏଥିରେ ବିଚିତ୍ରତା କଅଣ ?

ସେ କହନ୍ତି, ଉତ୍କଳ ଆମର ଜନ୍ମଭୂମିଭାବରେ ଅବଶ୍ୟ ବନ୍ଦନୀୟ । ଆମର ଭୌତିକ ଶରୀର ଏ ଦେଶରେ ଜନ୍ମଗ୍ରହଣ କରିଛି ବୋଲି ଏ ଦେଶକୁ ପାରମାର୍ଥିକ ମୂଲ୍ୟ ଦିଆଯିବା ଉଚିତ ନୁହେଁ । କିନ୍ତୁ ଉତ୍କଳ ଆଧ୍ୟାତ୍ମିକତାର ଲୀଳାଭୂମି । ଏ ପୁରୁଷୋତ୍ତମଙ୍କର ଅଧିଷ୍ଠିତ ଭୂମି । ଉତ୍କଳୀୟ ସଂସ୍କୃତିର ମୂଳମନ୍ତ୍ର ହେଉଛି ଆଧ୍ୟାତ୍ମିକତା । ତେଣୁ ଉତ୍କଳକୁ ସେ ପାରମାର୍ଥିକ ମୂଲ୍ୟ ଦେଉଥିଲେ । ତାଙ୍କର ଦେଶସେବା ଓ ପାରମାର୍ଥିକ ସାଧନା ଯୁଗପତ୍ ସମାହିତ ହେଉଥିଲା । ତାଙ୍କ ଦେଶପ୍ରାଣତାରେ ଜଡ଼ବାଦସୁଲଭ ମାଟି-ସର୍ବସ୍ୱ ଦେଶପ୍ରାଣତାର ଗନ୍ଧ ନ ଥିଲା । ସେ ଉତ୍କଳୀୟ ସଂସ୍କୃତିକୁ ପୁରୁଷୋତ୍ତମ ସଂସ୍କୃତି ବୋଲି କହୁଥିଲେ । କଳିଙ୍ଗ-ଭାରତୀ ଓ ଉତ୍କଳ-ଶିଳ୍ପ-ସାହିତ୍ୟ-ସମାଜର ପ୍ରତୀକ ଚିହ୍ନରେ କୋଣାର୍କ ଓ ଭଞ୍ଜଙ୍କ ପ୍ରତିଚ୍ଛବିର ଊର୍ଦ୍ଧ୍ୱସ୍ଥାନରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଛବି ଅଙ୍କିତ ହୋଇଅଛି । ବୀଣା, ତୁଳୀ, ଲେଖନ, ବଟାଳୀ ସାଧନର ପରମାଦର୍ଶ ପୁରୁଷୋତ୍ତମ ଭଞ୍ଜ-ସାହିତ୍ୟ ଓ କୋଣାର୍କ-ପୁରୁଷୋତ୍ତମ ସଂସ୍କୃତିର ସର୍ବଶ୍ରେଷ୍ଠ ପ୍ରକାଶ । ପୁରୁଷୋତ୍ତମ ସଂସ୍କୃତି ହିଁ ଉତ୍କଳର ଜାତୀୟ ସଂସ୍କୃତି । ଛନ୍ଦ-ବନ୍ଧହୀନ କବିତା ଓ ଭୋଗପ୍ରବଣ ଅସଂଯତ ଜଡ଼ବାଦୀ ଜୀବନକୁ ସେ ବିଜାତୀୟ ଆଖ୍ୟା ଦେଉଥିଲେ । ଏହି ବିଜାତୀୟତାର ସମୂଳ ନିରାକରଣପାଇଁ ସେ ବଦ୍ଧପରିକର ହୋଇଥିଲେ । କଳିଙ୍ଗଭାରତୀ ସେବକଗୋଷ୍ଠୀ ସେହି ମନ୍ତ୍ରରେ ଦୀକ୍ଷିତ ହୋଇ କାମ କରିଆସିଅଛି ।

୧୯୫୯ ମସିହାରେ ଗୁରୁଦେବ ମୋପାଖକୁ ପତ୍ରରେ ଲେଖିଥିଲେ, "କଳିଙ୍ଗଭାରତୀ ଉତ୍କଳର ମାନସିକ ରାଜ୍ୟକୁ ବେଶ୍ ଦୋହଲାଇପାରିଛି । ଏଣିକି ସେ କେବଳ ଭାରତୀ ଅର୍ଥାତ୍ ବାକ୍ ହେଲେ ଚଳିବ ନାହିଁ; ତାକୁ ଶରୀରୀ କରିବାକୁ ହେବ । ସମସ୍ତେ ଖୁବ୍ ଗମ୍ଭୀର ଭାବରେ ଚିନ୍ତା କରି ଉପାୟ ।" "କଳିଙ୍ଗଭାରତୀ ଆମ୍ଭମାନଙ୍କର ଦ୍ୱିତୀୟ ପରିବାର ଦ୍ୱିତୀୟ ଗୃହ—ଏ ଚିନ୍ତା ଏଣିକି ଭୂୟସୀ ହେଉ ।" "ଦ୍ୱିତୀୟ ପରିବାର ଓ ଦ୍ୱିତୀୟ ଘରକଥା ଭାବ, ଖୁବ୍ ନିବିଡ଼ ଖୁବ୍ ଘନଭାବରେ ଭାବ । ଭଗବାନଙ୍କ ଦୁଆରେ କରାଘାତ ନ କଲା ଯାଏ ତାହା ଫିଟିବ ନାହିଁ ।"

୧୯୬୦ ମସିହା ଜାନୁଆରୀ ୨୦ ତାରିଖରେ ସେ ୫୯ ବର୍ଷରେ ପଦାର୍ପଣ କଲେ । ମୁଁ ତାଙ୍କୁ ଅଭିନନ୍ଦନ ଜଣାଇ ଯେଉଁ ଚିଠି ଲେଖିଥିଲି, ତାର ଉତ୍ତରରେ ସେ ଲେଖିଲେ, "ତୁ ଲେଖି ଜଣାଇବାଯାଏ ମୁଁ ଠିକ୍ ଜାଣି ନ ଥିଲି ମୁଁ ଜୀବନର କେଉଁ ବର୍ଷରେ ପଦାର୍ପଣ କରିସାରିଛି । ମୁଁ ଆଦର୍ଶର ତାଡ଼ନାରେ ଗୁଡ଼ାଏ କାମ କରିଯାଏ । ପରିପାର୍ଶ୍ୱଟାଯାକ ଯେ ଆଦର୍ଶର ବିପରୀତ ଜନସରେ ପୂରିଥାଏ, ମୁଁ ପ୍ରଥମ ଉଚ୍ଛ୍ୱାସରେ ବୁଝିପାରେ ନାହିଁ । କିନ୍ତୁ ସୁଦର୍ଶନ ଚକ୍ର ମୋତେ ରକ୍ଷା କରେ, ଏ ବିଶ୍ୱାସ ମୋତେ ଚଳାଉଛି । ଧର୍ମ ସ୍ୱଳ୍ପ ହେଲେ ମଧ୍ୟ ଅପ୍ରଧର୍ଷ୍ୟ ।"

ସେ ଉପଦେଶ ଦେଉଥିଲେ, "ଅଭୟ ଦୈବୀ-ସମ୍ପତ୍ତି । ଗୀତାକୁ ଅବଲମ୍ବନ କରି କର୍ମ କର । ବ୍ୟକ୍ତିଗତ ଓ ସମଷ୍ଟିଗତ ସବୁ କାର୍ଯ୍ୟପାଇଁ ଗୀତା ବାଟ ନିର୍ଦ୍ଦେଶ କରି ଦେଇଅଛି ।" "ଜୀବନର ସ୍ଥିତି-

ବିଶେଷ ପ୍ରତିଭା ବିକାଶର ନିୟାମକ ନୁହେଁ । ସ୍ଥିତିକୁ ଅତିକ୍ରମ କରି ପ୍ରତିଭାର ଶିଖା ଊର୍ଦ୍ଧ୍ୱଗାମୀ ହୁଏ ।"

ସେ କହୁଥିଲେ, "ମୁଁ ସ୍ୱଳ୍ପେ ସନ୍ତୁଷ୍ଟ ହୋଇ 'ଅନଳ୍ପେ' ସନ୍ଧାନୀ ।"

କାର୍ଯ୍ୟ ନିବନ୍ଧନରେ ମତେ ଜୟପୁରରେ ଦୀର୍ଘକାଳ କଟାଇବାକୁ ହୋଇଛି । ଜୟପୁରରେ ସପରିବାର ଥିଲାବେଳେ ଗୁରୁଦେବ ଲେଖିଥିଲେ, "ମୁଁ ଏଠାରେ ରହି ଭାବୁଛି ତୁମେମାନେ ଅନୁପସ୍ଥିତ ନୁହଁ; ଜୟପୁରଯାଏ ମୋ ଆତ୍ମା ତୁମମାନଙ୍କ ମାଧ୍ୟମରେ ସଂପ୍ରସାରିତ ହୋଇଯାଇଛି ମାତ୍ର । ତୁମମାନଙ୍କର ବିଳାସରେ ମୁଁ ବିଳାସୀ, ତୁମମାନଙ୍କର ଆପ୍ୟୁରେ ମୁଁ ଆପ୍ୟୁଷ୍ମାନ । ମୋର ମରଣଶରୀର କେବେ ଖସିପଡ଼ିପାରେ—କିନ୍ତୁ ମୋର ଯେଉଁ ନିଃଶ୍ୱାସ କଳିଙ୍ଗେଶ୍ୱରୀ ରଙ୍ଗରେ ରଞ୍ଜିତ, ତାହା ତୁମମାନଙ୍କ ନାସାପଥରେ ପରମ୍ପରାକ୍ରମେ ପ୍ରବାହିତ ରହିବ । ଜୟ ମା କଳିଙ୍ଗେଶ୍ୱରୀ ।"

ଗୁରୁଦେବ ସଂସାର ଛାଡ଼ିଯିବା କିଛି ଦିନ ପୂର୍ବରୁ ରୋଗଶଯ୍ୟାରେ ଥାଇ କହିଥିଲେ, "ମନେ ରଖ, ବରଂ ଲେଖି ରଖ—ତୁମକୁ ଜୀବନରେ ବିକ୍ଷିପ୍ତ ନ ହୋଇ ନିକ୍ଷିପ୍ତ ହେବାକୁ ପଡ଼ିବ ।" ଆଜି ମୁଁ ଜୀବନରେ ବିକ୍ଷିପ୍ତ ହୋଇପଡ଼ୁଛି; ନିକ୍ଷିପ୍ତ କିପରି ହେବି ? ନିକ୍ଷିପ୍ତ ହେବା ଉପାୟ ମୋତେ କିଏ କହିବ ? ଆଜି ଗୁରୁଦେବ ନାହାନ୍ତି । ଆଉ କେହି କହିବେ ନାହିଁ—କେହି କହିପାରିବେ ନାହିଁ ।



# ବିଚ୍ଛନ୍ଦ ସ୍ମରଣେ

ଶ୍ରୀ ଘନଶ୍ୟାମ ପଣ୍ଡା

( ଶିକ୍ଷକ, ଅଲନ୍ତି ହା: ଇ: ସ୍କୁଲ୍, କେନ୍ଦୁଝର )

[ ରାଗ—ବୈଷି ]

( ୧ )

ବଜ୍ର-ନିନାଦିତ ମନ୍ତ୍ର    ବିଦଗ୍ଧ ଛନ୍ଦେ ଉପେନ୍ଦ୍ର
ପ୍ରଦୀପ୍ତ ପ୍ରତିଭା ହୋଇଥିଲା ଗର୍ଜ୍ଜିତ,
କିଏ ତୁମେ ମହ୍ୱସ୍ଥାନ    ଲକ୍ଷିତ ପ୍ରଶଂସାମାନ
"ଜୟ କଳିଙ୍ଗଭାରତୀ" କରି ଘୋଷିତ ।
ଭଞ୍ଜ-ଭାରତୀର ମହତ୍ତ୍ୱ,
ପ୍ରତିଷ୍ଠା ଲଭିଲା ଓଜଃ ତେଜ ବୀରତ୍ୱ ।

( ୨ )

ତିଳ ତିଳ ଗଲ ଜଳି    ବିଦଗ୍ଧ ସଳିତା ଭଳି
ବିତରିଲ ପୁଣ୍ୟପ୍ରଭ ଜ୍ଞାନ-ଆଲୋକ,
ପୂଜ୍ୟ-ପୂଜା ବ୍ୟତିକ୍ରମେ    ଜାତି ପଡ଼େ ମହାଭ୍ରମେ
ସେ ବିଘ୍ନ ବିପଦୁ ତୁମେ ମୋହନାଶକ ।
କାନନର କୁସୁମକଳି
ବାସ ବିତରି ଅଯତ୍ନେ ଗଲ ମଉଳି ।

( ୩ )

ତୁମେ ଉପେନ୍ଦ୍ର, କୋଣାର୍କ,    ଜଗତନାଥପୂଜକ
ଉତ୍କଳୀୟ ସଂସ୍କୃତିର ଉଜ୍ଜ୍ୱଳ ରତ୍ନ,
ବିଚ୍ଛନ୍ଦ ସ୍ୱଚ୍ଛନ୍ଦ ଗାନେ    ଏ ବିଚ୍ଛନ୍ଦ ଜାତିପ୍ରାଣେ
ହେଲ ନିର୍ଗୁଣବାର୍ତ୍ତିକା ଜାଜ୍ଜ୍ୱଲ୍ୟମାନ
ତୁମ ସ୍ମରଣରେ ହୃଦୟ
ହୁଏ ପୁଣ୍ୟ ଦିବ୍ୟଭାବ ପରିପ୍ଳବମୟ ।



# ବିଚ୍ଛନ୍ଦବାବୁ

## ଶ୍ରୀ ରାଜେନ୍ଦ୍ର ବର୍ମା

ଆମ ମାତୃଭୂମି ଉତ୍କଳ କଳାର ଦେଶଭବରେ ଶ୍ରେଷ୍ଠ ଆସନ ଶତ ଶତ ବର୍ଷରୁ ପାଇଆସିଛି । ଏ ଦେଶର ଲୋକେ କଳାବିଶାରଦ ଥିବାରୁ କୋଣାର୍କ, ଭୁବନେଶ୍ୱର, ପୁରୀ, ଖିଚିଂ ପରି କଳାପୂର୍ଣ୍ଣ ମନ୍ଦିର, ପର୍ବତ ଓ ଗୁହାଗାତ୍ରରେ ଭାସ୍କର୍ଯ୍ୟ ମୂର୍ତ୍ତିମାନ ନିର୍ମାଣ କରିଥିଲେ । ଆମ ଦେଶର ଶିଳ୍ପୀ ଭୁବନବିଦିତ ତାଜମହଲ ଗଠନରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ ବୋଲି କଥିତ ଅଛି ।

ଏ ଗଲା ଶିଳ୍ପନୈପୁଣ୍ୟ କଥା । ତା' ପରେ ସାହିତ୍ୟକ୍ଷେତ୍ର କଥା ଧରାଯାଉ । ସେଥିରେ ମଧ୍ୟ ଉତ୍କଳର କବି ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲେ । ଆଜିକାଲି ବଙ୍ଗଳା-ସାହିତ୍ୟ ଭାରତରେ ସମୃଦ୍ଧ ସାହିତ୍ୟ ବୋଲି ପରିଚିତ । କିନ୍ତୁ ତା'ର ପୁରାତନ ସାହିତ୍ୟ ଦେଖିଲେ ଜଣାଯାଏ, ଆମ ଓଡ଼ିଆ ସାହିତ୍ୟ ପରି ସମୃଦ୍ଧ ନୁହେଁ । ତାଙ୍କ ପୁରାତନ ସାହିତ୍ୟରେ କେବଳ 'କାଶୀରାମ ଦାସ ମହାଭାରତ'କୁ ଛାଡ଼ିଦେଲେ ସେପରି ପୁରାତନ ଗ୍ରନ୍ଥ ନାହିଁ । କିନ୍ତୁ ଆମର ପୁରାତନ ସାହିତ୍ୟ ଯଥେଷ୍ଟ ସମୃଦ୍ଧିଶାଳୀ । ଆମର ରାମାୟଣ, ମହାଭାରତ ଆଦି ଅନେକ ପୁରାଣକଥା ଛାଡ଼ିଦିଆଯାଉ, କାରଣ ସେ [illegible] ଆମର ଜଗନ୍ନାଥ ଦାସ ଭାଗବତ ଓ ଶାରଳା ଦାସ ମହାଭାରତ, ବିଶ୍ୱନାଥ ଖୁଣ୍ଟିଆଙ୍କ ରାମାୟଣ, କୃଷ୍ଣ ସିଂହ ମହାଭାରତ, ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ଓ ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ, ବୈଦେହୀଶବିଳାସ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ପ୍ରେମସୁଧାନିଧିପରି ଗ୍ରନ୍ଥ ପ୍ରାୟ ଭାରତରେ ବିରଳ । ଭାରତର କୌଣସି ପ୍ରଦେଶର ପୁରାତନ ସାହିତ୍ୟ, ଆମ ସାହିତ୍ୟପରି ବହୁ ପୁରାତନ ଓ ସମୃଦ୍ଧ ସାହିତ୍ୟ ବୋଲି ମନେ ହେଉନାହିଁ । ସଂସ୍କୃତ ସାହିତ୍ୟରେ କାଳିଦାସଙ୍କ ସାହିତ୍ୟକୁ ଛାଡ଼ିଦେଲେ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ଭାରତରେ ସର୍ବଶ୍ରେଷ୍ଠ ସାହିତ୍ୟ-ଆସନ ଲାଭ କରିଛି ବୋଲି କହିବା ମଧ୍ୟ ଅପଳାପ ନୁହେଁ । ଅନ୍ୟ ଭାଷାରେ ଉପେନ୍ଦ୍ରଙ୍କ ସାହିତ୍ୟ ଅନୁବାଦ ହେଲେ ଉପେନ୍ଦ୍ର ଭଞ୍ଜ କାଳିଦାସଙ୍କ ସମକକ୍ଷ ହେବେ ।

ଆମର ପୁରାତନ ସାହିତ୍ୟର ଲୋକପ୍ରିୟତା କିପରି ଥିଲା, ତା'ର ଗୋଟିଏ ଦୃଷ୍ଟାନ୍ତ ଦେଲେ ସହଜରେ ଜଣାପଡ଼ିବ । ଊନବିଂଶ ଶତାବ୍ଦୀପର୍ଯ୍ୟନ୍ତ ଆମର ସାହିତ୍ୟ ଆଦିରସପୂର୍ଣ୍ଣ ସାହିତ୍ୟ ଥିଲା । ଊନବିଂଶ ଶତାବ୍ଦୀ ପ୍ରାରମ୍ଭରେ ନୂତନ ସାହିତ୍ୟର ପ୍ରଚୁର ସୂତ୍ରପାତ ହୁଏ । ଆମର ପ୍ରଥିତଯଶା କବି ଓ ମନୀଷୀ ନନ୍ଦକିଶୋର ତାଙ୍କର ବାଲ୍ୟଜୀବନ କଥାରେ ସେସମୟର ବିଦ୍ୟାଶିକ୍ଷାର ବର୍ଣ୍ଣନାରେ ସେକାଳ କଥା ଲେଖିଛନ୍ତି । ସେ କହିଛନ୍ତି—ଚଉପାଢ଼ୀ ଚଟଶାଳୀରେ ମଧ୍ୟାହ୍ନରୁ ନିଶୀଥପର୍ଯ୍ୟନ୍ତ ପ୍ରବାହିତ ସେ ସ୍ୱର୍ଗୀୟ ସୁଧାର ସ୍ରୋତ କମଳଲୋଚନ, କଳା-କଳେବର, କୋଇଲି କେଶବ ଯେ, କାନ୍ତ ମୋର ଗଲେ ମୃଗ ମାରି, ବିନଶା ନାସା ଶ୍ରବଣେ, ବିଭୂଷା ଜଟାମୁକୁଟ, ବକେ ବସିଥିଲି ଧ୍ରୁବ ଉପରେ, ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ, ଶିଂଶପା ବୃକ୍ଷର ଡାଳେ, କାନ୍ଦେ କଉଶଲ୍ୟା, କାହା ବୋଲେ ଗଲୁ ବନ, ବାଣ ବାଜିବାରେ ଥାଇ ଲକ୍ଷ୍ମଣ, ବୋଲେ ସୁଗ୍ରୀବେ ରାମ କ୍ଳେଶ ଭାଷା, ବନ ଘନେ ରଘୁମଣି, ଜୟ ରଘୁପତି

ଅଯୋଧ୍ୟାନୃପତି, କହେ ଘନୁମଣି ଗୁଣ କୁରୁପତି, ବିଡଲକୁ ଆଲିଙ୍ଗନ, ବିବିଧ ନ ଥିଲି ନୃପଣ୍ଡି, ଇତ୍ୟାଦି ଅନ୍ତ ନାହିଁ, ଅନନ୍ତ ସ୍ରୋତ ଚଳୁଥିଲା । ସେ ସ୍ରୋତ କେଉଁ ବିଧି-ବିଡ଼ମ୍ବନାରେ ବନ୍ଦ ହେଲା । ସେଦିନ ଚିରକାଳପାଇଁ ଅସ୍ତମିତ ହେଲା । ଆଉ କି ସେଦିନ କେବେ ଫେରିବ ନାହିଁ ? କବି କ୍ଷୋଭ ପ୍ରକାଶ କରି କହିଛନ୍ତି—ବର୍ତ୍ତମାନ ବୈଦେଶିକ ଭାଷାର ପ୍ରବଳ ସ୍ରୋତ ମାଡ଼ି ଆସୁଛି । ଏ ଓଡ଼ିଆ × × × × ସେ ସ୍ରୋତରେ ଭାସି ଯାଉଅଛି । ହେ ଜାତିପତି ପ୍ରଭୋ, ଜାଣିସୁଦ୍ଧା ଛଡ଼ାଇ ନେବାର ଯେବେ ଇଚ୍ଛା ଥିଲା, ତେବେ ଏ ରତ୍ନ ଦେଇଥିଲ କାହିଁକି ?

କବି ନନ୍ଦକିଶୋରଙ୍କପରି ମନୀଷୀ ପାଶ୍ଚାତ୍ୟ ଶିକ୍ଷା ଅର୍ଥାତ୍ ଆଧୁନିକ ଶିକ୍ଷାର ପ୍ରସାର ବିରୁଦ୍ଧରେ କିପରି ଥିଲେ, ଉକ୍ତ ଟିପ୍ପଣୀରୁ ଜଣାପଡ଼ୁଛି । ସେ ପାଶ୍ଚାତ୍ୟ ଶିକ୍ଷାରେ ପଣ୍ଡିତ ଥିଲେ ମଧ୍ୟ ପୁରାତନ ସାହିତ୍ୟର କିପରି ପକ୍ଷପାତୀ ଥିଲେ, ଏହି କେତେ ଧାଡ଼ି ମନ୍ତବ୍ୟରୁ ଜଣାପଡ଼ୁଛି । ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା କଲେ ଦେଖାଯିବ ଯେ ଆମର ସାହିତ୍ୟ ଖୁବ୍ ଗଣ୍ୟସ୍ଥାନ ଓ ମହତ୍ସ୍ଥାନ ଥିଲା । ଆମର ସେହି ସାହିତ୍ୟ-ମଞ୍ଜୁଷା ନାନା ମୂଲ୍ୟବାନ୍ ରତ୍ନରେ ପୂର୍ଣ୍ଣ । ସେହି ରତ୍ନର ଚାକ୍ଷୁଷଭାବରେ ବିଚ୍ଛନ୍ଦବାବୁ ହିଁ ଭକ୍ତଙ୍କରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି ।

ବିଚ୍ଛନ୍ଦବାବୁ ପ୍ରାଚୀନ ସାହିତ୍ୟକୁ ବାଲ୍ୟକାଳରୁ ଆଦର କରିଆସିଛନ୍ତି । ସେ ବିଳଙ୍କପରି ପାଶ୍ଚାତ୍ୟ ଶିକ୍ଷାର ପାଣ୍ଡିତ୍ୟ ଅର୍ଜନ କରି ମଧ୍ୟ ତାହାପ୍ରତି ତାଙ୍କର ମମତା ନ ଥିଲା । ଆମର ଆଧୁନିକ ସାହିତ୍ୟର ଶୈଳୀକୁ ସେ ଆଦୌ ପସନ୍ଦ କରୁ ନ ଥିଲେ ।

ଦିନକର ଘଟଣାରୁ ଏ କଥାର ପ୍ରକୃତ ପ୍ରମାଣ ମିଳେ । ଥରେ ବିଚ୍ଛନ୍ଦବାବୁ ନନ୍ଦକିଶୋରଙ୍କ ଶ୍ରାଦ୍ଧ ସଭାରେ ସଭାପତିତ୍ୱ କରିଥାନ୍ତି । ସଭା ଆରମ୍ଭରେ ସେ କହିଲେ, "ଆଜିର ଶ୍ରାଦ୍ଧସଭାରେ ଉପସ୍ଥିତ ବ୍ୟକ୍ତି-ମାନଙ୍କୁ ନିବେଦନ କରୁଛି, ନନ୍ଦକିଶୋର ପ୍ରାଚୀନ ଓଡ଼ିଆ ସାହିତ୍ୟର ପ୍ରେମିକ ଥିଲେ, ତେଣୁ ତାଙ୍କ ଗୁଣଗାନ କରିବାକୁ ହେଲେ ସେହି ଭାଷାରେ ହିଁ ଆଲୋଚନା କରନ୍ତୁ । ଯଦି ତା' ନ କରନ୍ତି, ତେବେ ମୁଁ ସଭାପତିତ୍ୱରୁ ଅପସରି ଯିବି ।" ବିଚ୍ଛନ୍ଦବାବୁ କେତେ ଉଗ୍ର ପ୍ରାଚୀନ ସାହିତ୍ୟପ୍ରେମୀ ଥିଲେ, ଏଇ କେଇ ପଦ କଥାରୁ ତା ସ୍ପଷ୍ଟ ପ୍ରତୀୟମାନ ହେଉଛି ।

ବିଚ୍ଛନ୍ଦବାବୁଙ୍କ ସଙ୍ଗରେ ମୋର ଆମ ପ୍ରାଚୀନ ସାହିତ୍ୟ ସମ୍ବନ୍ଧରେ ଆଲୋଚନା ଅନେକ ଥର ହୋଇଛି । ସେ କହିଛନ୍ତି—ଆଜିକାଲି ଆମ ସାହିତ୍ୟ ଅନ୍ତଃସାରଶୂନ୍ୟ । ତା ଅନ୍ୟ ଭାଷାର ସାହିତ୍ୟର ଅନୁକରଣ ଓ ଶ୍ଳେଷରେ ଗଢ଼ିଉଠିଛି । ଆମର ପୁରାତନ ସାହିତ୍ୟ ଓଡ଼ିଶାର ଜଳବାୟୁ ଓ ଖାଣ୍ଟି ଓଡ଼ିଶୀ ଶୈଳୀରେ ଋଦ୍ଧିମନ୍ତ । ତା'ର ବୁନିୟାଦି ବହୁ ପୁରାତନ କାଳରୁ ପଡ଼ିଛି । ଭାରତର କୌଣସି ପ୍ରାଚୀନ ସାହିତ୍ୟ ଏତେ ପ୍ରାଚୀନ ବିଭବଶାଳୀ ଓ ଗୌରବୋଜ୍ଜ୍ୱଳ ନୁହେଁ । ଆଜିକାଲିର ସାହିତ୍ୟର ଗତି ଧ୍ୱଂସଆଡ଼କୁ । ମୁଁ ପ୍ରତିଜ୍ଞା ଗ୍ରହଣ କରିଛି, ଏ ଦେଶରେ ପୁଣି ସେହି ପ୍ରାଚୀନ ସାହିତ୍ୟକୁ ପୂର୍ବର ସେହି ଗୌରବାବହ ସ୍ୱର୍ଣ୍ଣଯୁଗପରି ପୁନଃ ପ୍ରତିଷ୍ଠା କରିବି । ସେହି ଉଦ୍ଦେଶ୍ୟରେ ସେ "କଳିଙ୍ଗ-ଭାରତୀ" ସାହିତ୍ୟ ଅନୁଷ୍ଠାନ ଓ "ଗ୍ରନ୍ଥ-ସାହିତ୍ୟ-ସମାଜ" ଗଠନ କଲେ । ଓଡ଼ିଶାରେ ପଚିଶ ବର୍ଷରୁ ଊର୍ଦ୍ଧ୍ୱ ଏ ଅନୁଷ୍ଠାନ ଚଳାଇ ପ୍ରତିବର୍ଷ ଭଞ୍ଜ-ଜୟନ୍ତୀ ଉତ୍ସବ ଓ ଆଲୋଚନା ସମାଲୋଚନା ସହ ବିଭିନ୍ନ କବିମାନଙ୍କର ସାହିତ୍ୟ ପ୍ରକାଶ କରିଥିଲେ । ଉପେନ୍ଦ୍ର ଭଞ୍ଜଙ୍କୁ ଶ୍ରେଷ୍ଠ ସାହିତ୍ୟିକ ବୋଲି କବିସମ୍ରାଟ-ଆସନ ଦେଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ'କୁ ଇଂରାଜୀରେ ଅନୁବାଦ କରି ଓଡ଼ିଶା ବାହାରେ ତାଙ୍କର ଗୌରବ ବଢ଼ାଇବାକୁ ସେ ପ୍ରୟାସ କରିଥିଲେ । ତାଙ୍କର ଆନ୍ଦୋଳନ ଫଳରେ ପୁରାତନ ସାହିତ୍ୟପ୍ରତି

ଓଡ଼ିଶାର ଶିକ୍ଷିତ-ମଣ୍ଡଳ ଆକୃଷ୍ଟ ହୋଇଛନ୍ତି । ଭଞ୍ଜଜୟନ୍ତୀ ସମଗ୍ର ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଆଜି ଅନୁଷ୍ଠିତ ହୋଇ ଭଞ୍ଜ-ସାହିତ୍ୟର ଆଲୋଚନା ହେଉଛି । ଓଡ଼ିଶାର ପୁରାତନ ସାହିତ୍ୟ ପ୍ରଚାର ଓ ପ୍ରସାରର ବୈପ୍ଳବିକ ନେତା ବୋଲି ତାଙ୍କୁ କୁହାଯାଇପାରେ । ତାଙ୍କୁ ଏହି ଆନ୍ଦୋଳନର ପ୍ରଥମାବସ୍ଥାରେ ଭୟଙ୍କର ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼ିଥିଲା । ନାନା ସମାଲୋଚନାର କଟୂକ୍ତି ଓ ବ୍ୟଙ୍ଗୋକ୍ତି ତାଙ୍କୁ ସହ୍ୟ କରିବାକୁ ପଡ଼ିଛି । ସେସବୁକୁ ସେ ଧୀରଭାବରେ ସଙ୍ଗତ ଯୁକ୍ତି ତଥା ଆଲୋଚନା, ସମାଲୋଚନା କରି ଜୟ କରିପାରିଥିଲେ ।

ବିଚ୍ଛନ୍ଦବାବୁ ଆଜି ଆମକୁ ତ୍ୟାଗ କରି ଅମର-ଧାମକୁ ଚାଲିଯାଇଛନ୍ତି । ସେ ଦେଶର ଯେଉଁ ସୁଯୋଗ୍ୟ ଦାୟାଦ ଗଢ଼ିଯାଇଛନ୍ତି ଏବଂ ଦେଶରେ ସେ ଯେଉଁ କ୍ଷେତ୍ର ପ୍ରସ୍ତୁତ କରିଯାଇଛନ୍ତି, ତା' ପୁଣି ପୂର୍ବ-ଗୌରବ ନିଶ୍ଚୟ ଫେରାଇ ଆଣିବ । ବିଚ୍ଛନ୍ଦବାବୁ ଲେଖକ ଭାବରେ ଓଡ଼ିଶାରେ ପ୍ରତିଷ୍ଠିତ ନୁହନ୍ତି ବୋଲି କୁହାଯାଇପାରେ; କିନ୍ତୁ ସେ ପୁରାତନ ସାହିତ୍ୟକୁ ପୁନର୍ବାର ଉତ୍କଳରେ ପ୍ରତିଷ୍ଠା କରାଇବାର ଯେଉଁ ବିପ୍ଳବ ସୃଷ୍ଟି କରିଯାଇଛନ୍ତି, ସେଇଥିରେ ହିଁ ସେ ସ୍ମରଣୀୟ ହୋଇ ରହିବେ ।



# ସେ ପଥେ ଚାହୁଁ

## ଶ୍ରୀ ଗୌରଚନ୍ଦ୍ର ମହାପାତ୍ର

ସଙ୍ଗୀତମୟ ଛନ୍ଦ ଆକୁଳ କବି
ତୁମେ ଗାଇଗଲ ଯେତେ ଗୀତ ଅନୁଭବ,
ମୂର୍ଚ୍ଛନା ତାର
ଏ ଜାତିମାନସେ ଦେଇଛି ଅଲିଭା ଛବି । ୧ ।

ଭଞ୍ଜ - କବିତା - କଞ୍ଜ ସୁରଭି ଗୁଣି,
ତୁମେ ସରଜିଲ ଭାଷାର ମଞ୍ଜୁ ଠାଣି ।
ଅଶାନ୍ତ ଗରଭୁ
ଅମୂଲ ମୁକ୍ତା ତୁମେ ପରା ଦେଲ ଆଣି । ୨ ।

ବିସ୍ମୃତି କୋଳେ ହଜିଥିଲା ଯେତେ ଧନ,
ଫେରାଇଛି ତାକୁ ତୁମରି ସାଧନା ଶ୍ରମ ।
ଲୁପ୍ତ ବିଭବ
ତୁମରି ଆଲୋକେ ହୋଇଛି ଦୀପ୍ତିମାନ । ୩ ।

କଳାର ପୂଜା କି କାଳ କରିପାରେ ଦୂର,
ହଜିଯାଏ ସତେ କବି ଗୀତି ସୁମଧୁର !
ଝଙ୍କାର ତବ,
ସବୁରି କଣ୍ଠେ ତୋଳିଛି ଅଭୁଲା ସୁର । ୪ ।

ନବ ଗୀତିକାର ତାନ, ମାନ, ଲୟ ପାଇଁ
ତୁମେ ଚାଲିଗଲ କେଉଁ ଦୂରଦେଶ ଧାଇଁ,
ସିକ୍ତ ନୟନେ
ଆମେ ରହିଅଛୁଁ, ଅଧୀରେ ସେ ପଥେ ଚାହୁଁ । ୫ ।



# ସ୍ୱର୍ଗତ ବଚ୍ଛନ୍ଦବାବୁ

## ଶ୍ରୀ ପରମାନନ୍ଦ ମହାନ୍ତି

ବଚ୍ଛନ୍ଦବାବୁଙ୍କ ସାଙ୍ଗରେ ମୋର ପ୍ରଥମ ପରିଚୟ ୧୯୩୧ ମସିହା ଶେଷ ବେଳକୁ । ସେତେବେଳକୁ ପ୍ରଥମ-ବାର୍ଷିକ ବିଜ୍ଞାନ ଶ୍ରେଣୀର ଛାତ୍ର ମୁଁ । ଓଡ଼ନେଲ କମିଟି କଟକ ଆସୁଥାନ୍ତି ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ସାକ୍ଷ୍ୟ ନେବାକୁ । ସେମାନଙ୍କୁ ଦେଖାଇବାପାଇଁ ଗୋଟିଏ ପଟୁଆରର ଯୋଗାଡ଼ ହେଉଥାଏ । ସେହି ପଟୁଆର ଯୋଗାଡ଼ କରିବାକୁ ଆମେ କେତେ ଜଣ କଲେଜ ଓ ସ୍କୁଲଛାତ୍ର "ପ୍ରାଚୀ ସମିତି" ଘରେ ଏକାଠି ହେଉଥାଉ । ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଓ ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ସେତେବେଳେ ପ୍ରାଚୀ ସମିତିର ମୁଖ୍ୟଭାବରେ କାମ କରୁଥାନ୍ତି । ସେ ଦୁଇଜଣ ଅଧ୍ୟାପନା କାର୍ଯ୍ୟରେ ରହିବାରୁ ବଚ୍ଛନ୍ଦବାବୁ ହିଁ ପ୍ରାଚୀ ସମିତିର ବିଭିନ୍ନ ଗ୍ରନ୍ଥ ସଂକଳନ ଓ ମୁଦ୍ରଣର ଦାୟିତ୍ୱ ନେଇଥାନ୍ତି ।

ବଚ୍ଛନ୍ଦବାବୁ ସେହିଠାରେ ରହୁଥାନ୍ତି । ଆମେ ଅନେକ ଦିନୁଁ ବଚ୍ଛନ୍ଦବାବୁଙ୍କ ନାଁ ଶୁଣିଥାଉ । ପ୍ରାଚୀନ ଓଡ଼ିଆ ଓ ଇଂରେଜୀରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଅଛି ବୋଲି ମଧ୍ୟ ଶୁଣିଥାଉଁ; ମାତ୍ର ତାଙ୍କୁ ପ୍ରତ୍ୟକ୍ଷରେ ଦେଖିବାର ସୁଯୋଗ ହୋଇ ନ ଥିଲା । ପ୍ରାଚୀ ସମିତି ସେତେବେଳେ ଗଣେଶଘାଟର ଗୋଟିଏ ଦୋମହଲା କୋଠାଘରେ ଥାଏ । ଉପର ମହଲାରେ ଗୋଟିଏ ଛୋଟ ପାଠାଗାର ଓ ପଠନାଗାର ଥାଏ । ତାକୁଇ କେନ୍ଦ୍ର କରି ଆମେ କେତେ ଜଣ ସେଠାରେ ଏକାଠି ହେଉଥାଉ । ସେହିଠାରେ ଅନେକଥର ବଚ୍ଛନ୍ଦବାବୁଙ୍କୁ ଦେଖିବାର ସୁଯୋଗ ପାଇଛି । ଗୋଡ଼ ତାଙ୍କର ଅଦଡ଼ ବୋଲି ଶୁଣିଥାଏ; କିନ୍ତୁ ତାଙ୍କୁ ଅନେକ ଦିନପର୍ଯ୍ୟନ୍ତ ନିଜ ଜାଗାରୁ ଉଠି ଚାଲିବାର ଦେଖେ ନାହିଁ । ଟେବୁଲ ଉପରୁ ତାଙ୍କର ଶରୀରର ଯେତିକି ଅଂଶ ଉପରକୁ ଦେଖାଯାଉଥାଏ, ତାହା ସମ୍ପୂର୍ଣ୍ଣ ସୁସ୍ଥ ଓ ସୁଦର୍ଶନ ବୋଲି ମନେ ହେଉଥାଏ ।

ଓଡ଼ନେଲ କମିଶନ ଆସିଲେ ଓ ଗଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିଥିବା କେତେ ଜଣ କଲେଜପଢ଼ୁଆ ସାଥୀ ଏହି ଅବସରରେ ଏକଜୁଟ ହୋଇଗଲୁ । କେତେ ଦିନପର୍ଯ୍ୟନ୍ତ କେନ୍ଦ୍ର ହେଲା ସେହି ପ୍ରାଚୀ ସମିତି ପାଠାଗାର । ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ସେତେବେଳେ ଯୁବକ । ତାଙ୍କର ଇଙ୍ଗିତରେ ପ୍ରଥମ କରି ଆରମ୍ଭ କଲୁ ବିଦ୍ୟାର୍ଥୀ ସଂଘ, ଓ ପରେ ପରେ ଗୋଟିଏ ସଙ୍ଗୀତ ବିଦ୍ୟାଳୟ; ଯାହା କି ବର୍ତ୍ତମାନ ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟରୂପେ ଖ୍ୟାତି-ଲାଭ କରିଛି । ଏସବୁ କାମରେ ଆମେ ବଚ୍ଛନ୍ଦବାବୁଙ୍କ ପରାମର୍ଶ ପ୍ରାପ୍ତ ହେଉଁ । ସେ ଅକୁଣ୍ଠିତଭାବରେ ଲେଖା-ଲେଖି, ଆୟୋଜନ-ଆନ୍ଦୋଳନ, ସବୁକଥାରେ ଆମକୁ ସାହାଯ୍ୟ କରନ୍ତି । ତାଙ୍କ ସଙ୍ଗେ ଆଳାପ କ୍ରମେ ଘନିଷ୍ଠତର ହେଲା । ସେତେବେଳକୁ ତାଙ୍କୁ ଚାଲିବାର ମୁଁ ଥରେ ଅଧେ ଦେଖିସାରିଲିଣି । ଦିନେ ରହସ୍ୟ କରି କଥାରେ କଥାରେ କହିଦେଲି, "ଆପଣଙ୍କ ବାପାବୋଉ ବୋଧହୁଏ ଜନ୍ମରୁ ଆପଣଙ୍କ ଗୋଡ଼ର ଏ ଦଶା ଦେଖି ନାମ ଦେଇଥିଲେ 'ବଚ୍ଛନ୍ଦଚରଣ' ।" ସଙ୍ଗେ ସଙ୍ଗେ ବଚ୍ଛନ୍ଦବାବୁ ଉତ୍ତର ଦେଲେ, "ମୋର ତ ଗୋଡ଼ ଜନ୍ମରୁ ଏପରି ନ ଥିଲା, ପରେ ହଠାତ୍ ଏପରି ହୋଇଗଲା । ମୁଁ ମୋ ପରବର୍ତ୍ତୀ ଜୀବନରେ ବିଶେଷଭାବରେ 'ଛନ୍ଦ' ବିଷୟରେ ଜାଣିବି ବୋଲି ମୋ ବାପାବୋଉ

ବୋଧହୁଏ ଜାଣିପାରି ମୋ ନାଁ ଦେଇଛନ୍ତି 'ସ୍ୱଚ୍ଛନ୍ଦଚରଣ ।" ଆମେ ସମସ୍ତେ ହସିଉଠିଲୁ ।

ତା'ପରେ ଘଟଣାଚକ୍ରରେ ପଡ଼ି ଅନେକ ଦିନ ଓଡ଼ିଶା ବାହାରେ ରହିଲି । ବରାବର ଶୁଣେ ସ୍ୱଚ୍ଛନ୍ଦବାବୁଙ୍କ କଥା । ସେସମୟରେ କଂଗ୍ରେସର ପ୍ରତ୍ୟକ୍ଷ ବିରୋଧ କରି ସେ ବଡ଼ ନିର୍ଯ୍ୟାତନା ମଧ୍ୟ ସହିଲେ । ବଡ଼ ଦାମ୍ଭିକ ସେ—ଯାହା ବୁଝିଥିବେ ସେଇଆ, ଭାଙ୍ଗିଯିବେ ପଛେ ନଇଁବେ ନାହିଁ । ଏଥିସକାଶେ ତାଙ୍କୁ ଉତ୍ତର ଜୀବନରେ ବହୁତ ଅସୁବିଧାରେ ପଡ଼ିବାକୁ ହୋଇଛି । ଅନେକ ଦିନପରେ ମୁଁ ଓଡ଼ିଶାକୁ ଫେରିଲି । ଯୋଗ ଏପରି ହେଲା ଯେ ତାଙ୍କରି ପାଖରେ ପୁଣି କାମ କରିବାକୁ ପଡ଼ିଲା । ଗଙ୍ଗାମନ୍ଦିରରେ ଗୋଟିଏ ପୁରୁଣା କୋଠାଘର ଭଡ଼ା ନିଆଯାଇ ଓଡ଼ିଶାରେ ପ୍ରଚୁର ବିଭାଗର ମୂଳଦୁଆ ପଡ଼ିଥାଏ ସେଠାରେ । ସାମନାର ଗୋଟିଏ ବଖରାରେ ସେ ଓ ମୁଁ ଦୁଇଜଣ ବସୁ, ମଝିରେ କାଠର ପରଦାଟିଏ ଥାଏ । ପରଦା ଛାତକୁ ଲାଗି ନ ଥାଏ । ଦରକାର ହେଲେ ଆମେ ଆପଣା ଆପଣା ଜାଗାରେ ବସି କଥାବାର୍ତ୍ତା ହେଉ । କାମଧନ୍ଦା ସାରି ଅଫିସଘରେ ଆମର ଟିକିଏ କାବ୍ୟଚର୍ଚ୍ଚା ହୁଏ । ମୁଁ କାବ୍ୟକବିତା ଲେଖାଲେଖି ଜାଣେନାହିଁ, କିନ୍ତୁ ସମଝଦାର ବୋଲି ଆଉ କାହାପାଖରେ ନ ହେଉ ପଛେ ସ୍ୱଚ୍ଛନ୍ଦବାବୁଙ୍କ ପାଖେ ନାଁ-ଡାକ ଥାଏ । 'କବିତା-କୁମୁଦ' ପ୍ରଭୃତି କେତୋଟି କାବ୍ୟ ତାଙ୍କର ସେହି ସମୟର ଲେଖା ।

ତାଙ୍କର ନିର୍ଭୀକତା ପାଇଁ ତାଙ୍କୁ କିପରି ଅସୁବିଧାରେ ପଡ଼ିବାକୁ ହେଉଥିଲା, ସେ କଥାର ଗୋଟିଏ ଉଦାହରଣ ଏଠାରେ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ବୋଧହୁଏ । ପ୍ରଚୁର ବିଭାଗରେ କାମ କରୁଥାଉଁ ଆମେ । ବିଭାଗଟି ଅସ୍ଥାୟୀ । ଆମେ ସମସ୍ତେ ଅସ୍ଥାୟୀଭାବେ କାମ କରୁଥାଉଁ । ଯୁଦ୍ଧ ସରି ନ ଥାଏ । ବିଭାଗ ଉଠିବ କି ରହିବ, କିଛି ଠିକ୍ ନ ଥାଏ । ସେହି ସମୟରେ 'Orissa First' ବୋଲି ଖଣ୍ଡିଏ ଇଂରେଜି ସାପ୍ତାହିକ ସ୍ୱର୍ଗତ ଆଗୃଖି ଚଳାଉଥାନ୍ତି । ସେଥିର ଗୋଟିଏ ସଂଖ୍ୟାରେ ସରକାର ତଥା ପ୍ରଚୁର ବିଭାଗ କର୍ମକର୍ତ୍ତାଙ୍କୁ କଟାକ୍ଷ କରି ଗୋଟିଏ ପ୍ରବନ୍ଧ ହଠାତ୍ ବାହାରିପଡ଼ିଲା । କର୍ତ୍ତା ମନେକଲେ, ସ୍ୱଚ୍ଛନ୍ଦବାବୁଙ୍କ ପରାମର୍ଶରେ ଏହା ବାହାରିଛି । କାରଣ ଆଗୃଖି ମହାଶୟ ଅନେକ ସମୟରେ ଆମ ଅଫିସରେ ବସି କଥାବାର୍ତ୍ତା କରନ୍ତି । କଥାବାର୍ତ୍ତା କେବଳ ଆଗୃଖି ଆସି କରନ୍ତି ତାହା ନୁହେଁ, ଅନେକ ସାମ୍ବାଦିକ ମଧ୍ୟ ଆସନ୍ତି । କିନ୍ତୁ ଏ ପ୍ରବନ୍ଧ ସ୍ୱଚ୍ଛନ୍ଦବାବୁଙ୍କ ସାହାଯ୍ୟ ଏପରିକି ପ୍ରରୋଚନାରେ ବାହାରିଛି ବୋଲି ଅଭିଯୋଗ ହେଲା । ଖବରକାଗଜ, ସକାଳୁଆ କଚେରୀ, ପ୍ରାୟ ଗୋଟାଏ ବାଜିବ । ଘରକୁ ଫେରିବା ସମୟ । ଏତିକିବେଳେ କର୍ତ୍ତାଙ୍କଠାରୁ ଡାକରା ଆସିଲା ସ୍ୱଚ୍ଛନ୍ଦବାବୁଙ୍କୁ । ସାଧାରଣତଃ ସ୍ୱଚ୍ଛନ୍ଦବାବୁଙ୍କ ଶାରୀରିକ ଅକ୍ଷମତା ଯୋଗୁଁ ତାଙ୍କୁ କର୍ତ୍ତା କେବେହେଲେ ପାଖକୁ ଡାକନ୍ତି ନାହିଁ; ବରଂ ଦରକାର ପଡ଼ିଲେ ନିଜେ ଆସି କଥାବାର୍ତ୍ତା ହୋଇଯାଆନ୍ତି ବା ଲୋକଦ୍ୱାରା ଲେଖା ପଠେଇ ଦିଅନ୍ତି । କିନ୍ତୁ ଆଜି ସିଧାସଳଖ ପାଖକୁ ଯିବାକୁ ଡାକରା ପାଇ ସ୍ୱଚ୍ଛନ୍ଦବାବୁ ମୋତେ ମଧ୍ୟ ସାଙ୍ଗରେ ଯିବାକୁ ଡାକିଲେ । ମୁଁ ଘରକୁ ବାହାରିଥିଲି; ବାଧ୍ୟହୋଇ ତାଙ୍କ ସଙ୍ଗେ କର୍ତ୍ତାଙ୍କ ପାଖକୁ ଗଲି । ସେଠାରେ ପହଞ୍ଚିବାରୁ କେତେକ କଥାବାର୍ତ୍ତାପରେ କର୍ତ୍ତା ସ୍ୱଚ୍ଛନ୍ଦବାବୁଙ୍କୁ କହିଲେ, "ଦେଖନ୍ତୁ, ଆପଣ ନାଗସାପ ଲାଙ୍ଗୁଡ଼ରେ ହାତ ଦେଉଛନ୍ତି, ଭଲ ହେବ ନାହିଁ ।" ଅପେକ୍ଷା ନ କରି ସ୍ୱଚ୍ଛନ୍ଦବାବୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ହଁ, ମୁଁ ବୁଣ୍ଡା କେଉଟ, ନାଗସାପର ବିଷଦାନ୍ତ ଭାଙ୍ଗିଦେଇପାରିବାର ଶକ୍ତି ମୋର ଅଛି ।" 'ହଉ' ବୋଲି କହି କର୍ତ୍ତା ଗମ୍ଭୀର ହେଲେ । ସ୍ୱଚ୍ଛନ୍ଦବାବୁ ରାଗରେ ତମତମ ହୋଇ ଘରକୁ ଗଲେ । ସେତେବେଳେ ଚାକିରି ତାଙ୍କର ଅସ୍ଥାୟୀ । ଅନ୍ୟ ସମ୍ବଳ କିଛି ନ ଥାଏ ତାଙ୍କର । କର୍ତ୍ତାଙ୍କର ସେ ବେଳର ପ୍ରତିପତ୍ତି ଯେପରି, ହୁଏତ ଅଳ୍ପସମୟ ଭିତରେ

ତାଙ୍କର ଚାକିରିଟା ଚାଲିଯାଇଥାନ୍ତା । ଏଥିପାଇଁ କୈଫିୟତ ଦେବାକୁ କୁହାଯାଇଥିଲା । ସେ ଯେଉଁ ଇଂରେଜୀ କୈଫିୟତ ଦେଇଥିଲେ, ତାହା ଏକ ପଢ଼ିବାର ଜିନିଷ ହୋଇଥିଲା । କୈଫିୟତ ଗଲା; କିନ୍ତୁ ଯୋଗ ଭଲ, ଅଳ୍ପ ଦିନ ମଧ୍ୟରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ ହୋଇଯିବାରୁ କଥାଟା ଚାପା ପଡ଼ିଗଲା । ନଚେତ୍ ବଡ଼ ହଇରାଣରେ ତାଙ୍କୁ ପଡ଼ିବାକୁ ହୋଇଥାନ୍ତା । ଏହିପରି କେତେ ଘଟଣା ଘଟିଛି । ବଡ଼ ନିର୍ଭୀକ ସେ—ଆଗପଛ ବିଚାର ନ କରି ଯେଉଁଟା ଠିକ୍, ସେଇଟା ସେ କହିବସନ୍ତି ବା କରିବସନ୍ତି; ଫଳରେ ବିପଦରେ ପଡ଼ନ୍ତି ।

ବହୁ ଘାତପ୍ରତିଘାତ ଦେଇ ଜୀବନରେ ଗତି କରିଛନ୍ତି ସେ; କିନ୍ତୁ ସିଧା ରାସ୍ତାରୁ ଓହ୍ଲାଇ ଯାଇନାହାନ୍ତି । ମୃତ୍ୟୁର ଅବ୍ୟବହିତପୂର୍ବରୁ ଖଣ୍ଡିଏ ଚିଠି ପାଇଲି ତାଙ୍କଠାରୁ ଭୁବନେଶ୍ୱରରୁ । ମୋତେ କାହିଁକି ଡକେଇଥାନ୍ତି ଭୁବନେଶ୍ୱରକୁ । ବର୍ଷାଦିନ, ଅବିରାମ ଧାରା ଚାଲିଛି । ସଞ୍ଜ ବୁଡ଼ି ଆସୁଛି । ମୁଁ ଯାଇ ତାଙ୍କ ବସାରେ ପହଞ୍ଚିଲି । ଦେଖିଲି, ଭିତରୁ କବାଟ ବନ୍ଦ, ଆଲୁଅ ଜଳୁନାହିଁ । କବାଟ ଫାଙ୍କରେ ଡାକିବାରୁ କ୍ଷୀଣସ୍ୱରରେ ଜବାବ ପାଇଲି, "କବାଟ ଖୋଲାଅଛି, ଠେଲି ଦିଅ ।" ଘରଭିତରକୁ ଯାଇ ଅସ୍ପଷ୍ଟ ଆଲୋକରେ ଦେଖେ ଯେ ଗୋଡ଼ଠାରୁ ମୁଣ୍ଡଯାଏ ଘୋଡ଼ିହୋଇ ଶୋଇଛନ୍ତି ସେ । ଆଲୁଅ ଜାଳି ପଚାରିଲି କଣ ହୋଇଛି ? ଉତ୍ତରରେ କହିଲେ, ଗତ ୧୫ ଦିନ ହେବ ମୋର ଜ୍ୱର ଓହ୍ଲାଉନାହିଁ, ବଡ଼ ଦୁର୍ବଳ ଲାଗୁଛି । ଏହା କହି ତାଙ୍କ ପୁଅର କିପରି ଟାଟା ଇଂଜିନିୟରିଂ କଲେଜରେ ନାଁ ଲେଖା ହେବ, ସେ ବିଷୟ ମୋତେ କହିଲେ । ମୁଁ କିନ୍ତୁ ସେସବୁ କଥା କିଛି ନ ଶୁଣି ତାଙ୍କୁ ଶୀଘ୍ର କଟକ ଆସି ଚିକିତ୍ସା କରାଇବାପାଇଁ ଅନୁରୋଧ କଲି । କିନ୍ତୁ ଦେଖିଲି, ସେ ନିଜ ସକାଶେ କାତର ନ ଥାନ୍ତି, "ଭଲ ହୋଇଯିବ, ରୋଗ କିଛି ନୁହେଁ" ବରାବର କହୁଥାନ୍ତି । ମୁଁ କିନ୍ତୁ ତାଙ୍କୁ ବିଶେଷ ଅନୁରୋଧ କରି କଟକ ଫେରିଲି । ତାହାର କିଛି ଦିନପରେ ଅତି ସାଙ୍ଘାତିକ ଅବସ୍ଥାରେ ତାଙ୍କୁ କଟକ ଡାକ୍ତରଖାନାକୁ ଅଣାଗଲା । ସେହି ଯେ ଆସିଲେ, ଆଉ ସେ ଘରକୁ ଫେରିନାହାନ୍ତି । ସେହି ଡାକ୍ତରଖାନାରେ ହିଁ ତାଙ୍କର ଦେହାବସାନ ହେଲା ।

ସବୁ ସରସ୍ୱତୀଙ୍କର ଉପାସକ ଲକ୍ଷ୍ମୀଙ୍କର ଦୟାରୁ ବଞ୍ଚିତ ହେଲାପରି ସେ ମଧ୍ୟ ଲକ୍ଷ୍ମୀଙ୍କ ଦୟାରୁ ବଞ୍ଚିତ ଥିଲେ । ଦୀର୍ଘଦିନ ରୋଗଭୋଗ ତାଙ୍କର ମନର ବଳ କେତେକାଂଶରେ ଭାଙ୍ଗି ଦେଲା । କିନ୍ତୁ ମରିବାର ୪ ଘଣ୍ଟାପୂର୍ବରୁ ସେ ତାଙ୍କ ପ୍ରିୟ ଅନୁଷ୍ଠାନ 'କଳିଙ୍ଗ-ଭାରତୀ' ବିଷୟରେ ମଧ୍ୟ ପଚାରିଛନ୍ତି । ସେ ଅନୁଷ୍ଠାନ ତାଙ୍କର ପ୍ରାଣଠାରୁ ଅଧିକ ପ୍ରିୟ ।



# ବିଚ୍ଛନ୍ଦ-ବିୟୋଗ

ଶ୍ରୀ ନଟବର ସାମନ୍ତର
( ଅରଖିଆ, କୁଜଙ୍ଗ )

[ ରାଗ—ରସକୁଲ୍ୟା ]

ଭଞ୍ଜକବିଙ୍କର ଯୋଗ୍ୟ ଦାୟାଦ
ଲବ୍ଧପ୍ରତିଷ୍ଠ ସାହିତ୍ୟ-କୋବିଦ
ଭାରତୀ ଭବନ - ମଉଡ଼ମଣି
ଗୁଣଗ୍ରାହୀ, ଗୁଣିଗଣ ଅଗ୍ରଣୀ ଯେ
ବିଚ୍ଛନ୍ଦଚରଣ ଆଜ ଯେ
ଛାଡ଼ିଲେ ଧରା ଚେତନହନ୍ତ ଜାତି
ଧଇର୍ଯ୍ୟ-ପ୍ରାଚୀରୁ ଭାଜ ଯେ ।

କୁଟ୍ଟିକାଚଳେ ବିଷାଦଭରା
କାନ୍ଦଇ ନଟିଳ ଉତ୍କଳ ଧରା ।
ତନୟ - ରତନେ ହରାଇ ଚିର
ଦୁଃଖ ଭୁଲିବାକୁ ଅଭାଗିନୀର ସେ
ନାହିଁ ଆଜ ପଟାନ୍ତର ଯେ
କେତେ ବଡ଼ ଆଶା ଅପୂର୍ଣ୍ଣ ରହିଲା
ବିଚ୍ଛନ୍ଦର ଘଟାନ୍ତର ।

ଆଶା ଥିଲା ମନେ ବିଚ୍ଛନ୍ଦ ଲାଗି
ଉତ୍କଳ-ସନ୍ତାନେ ଉଠିବେ ଜାଗି
ଅନୁରାଗୀ ହୋଇ ନିଜ କୃଷ୍ଟିରେ
ହେୟ ଯା ମଣନ୍ତି ନିଜ ଦୃଷ୍ଟିରେ ସେ
ବିଚ୍ଛନ୍ଦ-ପ୍ରଦତ୍ତ-ଜ୍ଞାନ ଯେ
ନବ୍ୟଙ୍କୁ ପୂର୍ବ- ପୁରୁଷର କୃତିରେ
କରାଇବ ଆସ୍ଥାବାନ ।

ବିଧି କି ନ କଲା ! ସେ ଆଶା-ତରୁ
ବର୍ଦ୍ଧିଷ୍ଣୁବେଳେ କାଟିଲା ମୂଳରୁ ।
ବିଧାନ ତ ଜାଣି ଲଲାଟପଟେ
ବିଷାଦୁଁ ଭଲ ଗତି ନାହିଁ ମୋଟେ ସେ
ବିଚ୍ଛନ୍ଦ ରହନ୍ତା କାହିଁ ! ଯେ
ହାୟ, ଏ ଜାତିର ଅନ୍ୟେ ଯା ବୁଝିଲେ,
ବିଧାତା ବୁଝିଲା ଚାହିଁ ।

ଆହା ! ସେ ଗମ୍ଭୀର ମୁଖମଣ୍ଡଳ
ଦେଖିବ ନାହିଁ ଏ ଦୀନ ଉତ୍କଳ !
ଶୁଣିବ ନାହିଁ ଭଞ୍ଜ - ଜୟନ୍ତୀର
"ଜୟ ମା କଳିଙ୍ଗ-ଭାରତୀ" ଗିର ସେ
ହେଲା ଏ ସାତପତନ ଯେ
ପରଲୋକେ ଯାଇ ଘର କଲା ଏବେ
ସାହିତ୍ୟ-ନଭ-ତପନ ।

ଆହା ! ଦେଖିଛୁ ଏ ଦୀନ ଲେଖକ
ଭଞ୍ଜକୃତିର ଦକ୍ଷ ପ୍ରଖ୍ୟାପକ—
ବିଚ୍ଛନ୍ଦର ' ଏହି 'ଉତ୍କଳ-ପ୍ରୀତି
କେତେ ବିରାଟ, କି ଉଗ୍ର ପିମିତିକ
ସିନ୍ଧୁ, ଅନ୍ଧକାରିଣୀବ ଯେ
ଅନ୍ଧ କରି ଗଲା ବସୁନ୍ଧରା ତେଜ
ସତେ କି ଆଜ ଆସିବ ।

ଜନ୍ମି ଥାନ୍ତ ଯଦି ଆନ ଦେଶରେ
ଥାଆନ୍ତ କି ହୀନ ପରିବେଶରେ !
ନ ଥାନ୍ତେ କି ତୁମ ପାଶରେ କେହି !
ଭବୁ ଗଲବେଳେ ବିଦାୟ ନେଇ ସେ
ଏହି ଦେଶ ବୋଲି ସିନା ହେ
ସେ କେଉଁ ଚଣ୍ଡାଳ ଦେହେ ଏହା ସିବ !
ଅଭିଶପ୍ତ ଜାତି ସିନା ।

ସାହିତ୍ୟ-ଚର୍ଚ୍ଚାରୁ ବିଦାୟ ଘେନି
ଅନାଥ କରି ପୁଅକନ୍ୟା ବେନି ।
'ସପ୍ତାଚଉରି'ରେ ସଜ୍ଜନମେଳେ
ମଜ୍ଜନ ହେଲ ମହାନନ୍ଦାହ୍ଲାଦେ ସେ
ବୀଣାପାଣିଙ୍କର ଧ୍ୟାନେ ହେ
ଜନହୃଦ-ସରେ ଯା ସ୍ମୃତି-ସରୋଜ
ରାଜିବ ଚିର ଅମ୍ଲାନେ ।

କବିବାଣୀ କେବେ ନୁହେ ଅନ୍ୟଥା
'ଦେହ ପୂଜ୍ୟ ନୁହେଁ, ପୂଜ୍ୟ ଅବସ୍ଥା'
ଯା ଲାଗି ତୁମର ଆଜି ଏ ଗତି
ଜାଣିକି ନ ଥିବ ହେ ମହାମତି ହେ
ଏ ପୁଣି ଉତ୍କଳଧରା ଯେ
କବି-କଳାକାର ଉପାସେ ମରିବା
ଯେ ଦେଶର ପରମ୍ପରା ।

ଦକ୍ଷିଣକୁ ତୁମେ ଗଲେ ଭାସ୍କର
ନିଶା ହୁଅଇ ଯେସନେ ବୃହତ୍ତର ।
ଲଭି ପୂର୍ଣ୍ଣିମା - ବ୍ୟବଧାନ - ତମ
ତମିସ୍ରାର ଯଥା ବଢ଼ଇ ତମଃ ସେ
ତବ ବିଚ୍ଛେଦର ଦିନ ହେ
ହୃଦୟ ଯେତିକି ମଜ୍ଜଇ ତେତିକି
ଖେଦ-ଜଳେ ମନମୀନ ହେ ।

ଶ୍ରଦ୍ଧାଞ୍ଜଳି ଘେନ, ହେ ସୁଧୀବର
କର୍ଣ୍ଣ-ମୁଖେ ପିଇଛୁ କେତେ ଥର,
ଲଳିତ - ବଚନ - ଅମୃତ ତବ
ଆଉ କି ହେବ ସେକଥା ସମ୍ଭବ ହେ
ଭବଦୀୟ ଗୁଣମୁଗ୍ଧ ଯେ
ଏ ଦୀନର ତବ ବିୟୋଗ ସମ୍ବାଦେ
ପରାଣ ହୋଇଛି କ୍ଷୁବ୍ଧ ।



# ଦିନକର ସ୍ମୃତି

## ଶ୍ରୀମତୀ ଲବଙ୍ଗଲତା ଦେବୀ

ବିଚ୍ଛନ୍ଦବାବୁଙ୍କ ସ୍ମରଣିକାପାଇଁ କଲ୍ୟାଣୀୟ ସାହିତ୍ୟିକ ବନ୍ଧୁ ମୁରାରିବାବୁଙ୍କଦ୍ୱାରା ଅନୁରୁଦ୍ଧ ହୋଇଛି ତାଙ୍କ ବିଷୟରେ କିଛି ଲେଖିବାକୁ । ମୁଁ ବିଚ୍ଛନ୍ଦବାବୁଙ୍କ ସମ୍ବନ୍ଧରେ ବେଶି କିଛି ଜାଣିନାହିଁ କିମ୍ବା ତାଙ୍କ ସଂସ୍ପର୍ଶରେ ବେଶି ସମୟ ଆସିନାହିଁ । କେବଳ ଗୋଟିଏ ଦିନର ସ୍ମୃତି ଏଠାରେ ଲେଖିବାକୁ ଯାଉଛି ।

ଆଜକୁ ପ୍ରାୟ ଛଅବର୍ଷତଳେ ଦିନେ ମୋର ଖଣ୍ଡିଏ ସାର୍ଟିଫିକେଟ ଦରକାର ହେବାରୁ ତାଙ୍କ ତଗରପଡ଼ା ବାସଭବନକୁ ଯାଇଥିଲି । 'ଭଞ୍ଜଜୟନ୍ତୀ' ଆଜି ଅଳ୍ପଦିନ ଥାଏ । ସେଠାରେ ବହୁ ତରୁଣ ଓ ପୁରାତନ ସାହିତ୍ୟପ୍ରେମୀ ବ୍ୟକ୍ତି ସମବେତ ହୋଇଥାନ୍ତି । ନାନା ବିଷୟରେ ଘମାଘୋଟ ଆଲୋଚନା ଚାଲିଥାଏ । ବିଚ୍ଛନ୍ଦବାବୁଙ୍କୁ କେବେ ପୂର୍ବରୁ ଦେଖିବାର ସୁଯୋଗ ମୋର ଘଟି ନ ଥିଲା । ଦେଖିଲି, ମଝି ଚେୟାରରେ ଜଣେ ହସ ହସ ମୁଖ ପ୍ରୌଢ଼ ଭଦ୍ରଲୋକ ବସିଥାନ୍ତି । ମୁଁ ଭାବିଲି, ଏହି ହିଁ ବିଚ୍ଛନ୍ଦବାବୁ । ନମସ୍କାର ହୋଇ ପରିଚୟ ଦେଲି । ସେ ବସିବାକୁ ଇଙ୍ଗିତ ଦେଲେ । ସଙ୍ଗେ ସଙ୍ଗେ କହିଲେ, "ମା, ତୋର ଲେଖାସବୁ ପଢ଼ିଛି; କିନ୍ତୁ ତୋତେ ଦେଖିବାର ସୁଯୋଗ କେବେ ଘଟି ନ ଥିଲା । ଆଜି ଅଯାଚିତଭାବରେ ଆସି ପହଞ୍ଚିଥିବାରୁ ମୁଁ ବିଶେଷ ଆନନ୍ଦିତ ହେଲି ।"

ତାଙ୍କର ବେଶି ସମୟ ବ୍ୟୟ କରିବାର ଏ ବେଳ ନୁହେଁ ଭାବି ମୁଁ ମୋର ନିବେଦନଟି ଜଣାଇଲି । ସେ ଆନନ୍ଦରେ କାର୍ଯ୍ୟଟି ଶୀଘ୍ର ସମ୍ପନ୍ନ କରିଦେଲେ ଏବଂ ମୋତେ କହିଲେ "ମା, ତୁ ତ ଆଧୁନିକ ସାହିତ୍ୟ ଆଲୋଚନା କରୁଛୁ; ଟିକେ ପୁରାତନ ସାହିତ୍ୟପ୍ରତି ମନ ଦେ ।" ମୁଁ କହିଲି, "ମୁଁ ପିଲାଦିନରୁ ଛାନ୍ଦ, ଭଜନ ଇତ୍ୟାଦି ଗାଇଥାଏ । ମୋର ଏସବୁପ୍ରତି ଯଥେଷ୍ଟ ମମତା ଥିଲା ଓ ମୁଁ ନିଜେ ଏ ସଙ୍ଗୀତ ଗାଇ ଅନେକ ସଭାସମିତିରେ ପ୍ରଶଂସିତା ହୋଇଛି ।"

ସେ କହିଲେ, "ତୁ ଜାଣୁ, ଆମର ପୁରାତନ ସାହିତ୍ୟ-ଶୈଳୀ ଖୁବ ସୁନ୍ଦର । ଦେଶରେ ଲୋପପାଇ-ଆସୁଥିବା ସେହି ସାହିତ୍ୟକୁ ଆଧୁନିକ ସାହିତ୍ୟ-ବନ୍ୟାରୁ ରକ୍ଷାକରିବାକୁ ହେବ । ପୁଣି ସେ ସାହିତ୍ୟକୁ ଉତ୍କଳରେ ତାର ପୂର୍ବ-ଗୌରବ ଆସନରେ ଅଧିଷ୍ଠିତ କରିବାକୁ ହେବ । ଏଥିପାଇଁ ଆମ୍ଭମାନଙ୍କୁ ଯଥେଷ୍ଟ ସାଧ୍ୟସାଧନା ପଥଦେଇ ଅଗ୍ରସର ହେବାକୁ ହେବ । ପୁରାତନ କବିମାନଙ୍କର ସଙ୍ଗୀତ, ଛାନ୍ଦ ଓ ଚୌପଦୀର ପ୍ରଚାର କରିବାକୁ ପଡ଼ିବ । ଉତ୍କଳର ଗ୍ରାମେ ଗ୍ରାମେ ଭାଗବତଘର ଓ ଚୌପାଢ଼ୀମାନଙ୍କରେ ପୁଣି ପୂର୍ବପରି ସେହି ସଂଗୀତର ଗୁଞ୍ଜନ ଗୁଞ୍ଜରିତ ହୋଇଉଠିବ । ତୁମେ ଭୁଲିଯାଅନା ଯେ ତୁମେ ଭଞ୍ଜବଂଶଧର ।"

ମୋର ଆଜି ମନେ ପଡ଼ୁଛି, ଭାରତର ଆଧୁନିକ ଯୁଗର ସ୍ରଷ୍ଟା ଓ ମନୀଷୀ ସ୍ୱାମୀ ବିବେକାନନ୍ଦ ଦିନେ ଭାରତର ଯୁବକମାନଙ୍କୁ ଲକ୍ଷ୍ୟ କରି କହିଥିଲେ— ଯୁବକ ଭୁଲନା, ତୁମେ ଆର୍ଯ୍ୟ-ବଂଶଧର । ଆର୍ଯ୍ୟ-ଜାତିର ଉଷ୍ଣ ରକ୍ତ ତୁମ ଧମନୀରେ ପ୍ରବାହିତ । ବିଚ୍ଛନ୍ଦବାବୁଙ୍କ ସେହି ବାଣୀ ଠିକ ସ୍ୱାମୀ ବିବେକାନନ୍ଦଙ୍କ ବାଣୀପରି ମୋ ହୃଦୟରେ ସ୍ପନ୍ଦନ ଆଣିଥିଲା । ତାଙ୍କର ସେହି ବାଣୀ ଓ ତାଙ୍କର ହସ ହସ ମୁଖ ମୋର ସ୍ମୃତିରେ ଆଜି ମଧ୍ୟ ଜାଗରୂକ ହୋଇରହିଛି । ତାଙ୍କର ଜୀବନବ୍ୟାପୀ ସାଧନା ଓ ପଚିଶ ବର୍ଷର ଭଞ୍ଜଜୟନ୍ତୀର ଆନ୍ଦୋଳନ ଓଡ଼ିଶାର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତଯାଏ ବ୍ୟାପିଯାଇଛି । ପୁଣି ବିଚ୍ଛନ୍ଦବାବୁଙ୍କ ଭାଷାରେ କହିବାକୁ ଗଲେ, ସେହି ପୁରାତନ ସଂଗୀତ-ଗୁଞ୍ଜନ ଓଡ଼ିଶାରେ ସାହିତ୍ୟ-ବନ୍ୟା ଛୁଟାଇଦେଉ । ଉତ୍କଳ ସାହିତ୍ୟର ପରବର୍ତ୍ତୀ ଇତିହାସ ଯେଉଁ ଦିନ ଲେଖାଯିବ, ସେଦିନ ବିଚ୍ଛନ୍ଦବାବୁଙ୍କର ଆସନ ନିଶ୍ଚୟ ଉଚ୍ଚରେ ରହିବ । ତାଙ୍କର ଜୀବନବ୍ୟାପୀ ସାଧନାର ସିଦ୍ଧି ଉତ୍କଳର ତରୁଣସମାଜକୁ ପୁରାତନକୁ ଆଦର କରିବା ଦିଗରେ ନିଶ୍ଚୟ ଯେ ଉଦ୍‌ବୁଦ୍ଧ କରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

# ଜନତା ଏ ତୁମ ଗୀତ ଗାଏ

## କୁମାରୀ କାନନବାଳା ତ୍ରିପାଠୀ

ଅନେକ ସୁରଭି ହଜେ, ହସ ଲିଭେ, ରଙ୍ଗ ମଧୁ ସରେ
ଏଇ ଏ ଧରଣୀତଟେ, ଏଠି ସବୁ ନିହାତ କ୍ଷଣିକ
କଣ୍ଠର କାକଳୀ ତାଳ ମିଛଭରା ରଂଗମଞ୍ଚପରେ
ତୁମେ କି ମଣ୍ଡଳଗଲ ସ୍ନିଗ୍‌ଧ ଏକ ଜୀବନ୍ତ ମାଣିକ ।

ଗନ୍ଧରାଜ ଫୁଟେ ଯେବେ ପରିଣତି ଯାହା ହେବ ତାର
ଆମେ ଜାଣୁ; ପୂର୍ଣ୍ଣିମାର ନୀଳଜ୍ୟୋସ୍ନା ଭାଗ୍ୟଲେଖା ଅବା
ତଥାପି ଝରିଲେ ଫୁଲ, ସରିଗଲେ ଜହ୍ନମା ଜୁଆର
ଆମେ କିଆଁ ଦୁଃଖ ପାଉ, ଢାଳିଥାଉ ଲୋତକ ଅଥବା ?

ଏ ଦେଶର ଇତିହାସେ ନାମେ କରି ଦୀପ୍ତ ଓ ଅମର
ତୁମେ ତ ବିଚ୍ଛିନ୍ନ କଲ ପୃଥିବୀର ପ୍ରୀତିର ବନ୍ଧନ
ଏଭଳି ହୁଏ ତ ଦିନେ ସରିପାରେ ଆୟୁଷ ଆମର
ଲୁଚିବ ସ୍ୱପ୍ନର ଶିଖା, ଯେବେ ଆଉ ବୁକୁର ସ୍ପନ୍ଦନ ।

ଯିବାଟା ନିରାଟ ସତ୍ୟ, ତେବେ ସୁଦ୍ଧା ତୁମରି ବିଦାୟେ
ତୁମରେ ସାର୍ଥକ କରି ଜନତା ଏ ତୁମ ଗୀତ ଗାଏ ।



# ପୂଜ୍ୟପୂଜା

ଶ୍ରୀ **ଶ୍ୟାମସୁନ୍ଦର ମିଶ୍ର**, ଏମ୍. ଏ.

ଆଜିକୁ ଷାଠିଏ ବର୍ଷତଳେ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାଟାକୁ ସମ୍ପୂର୍ଣ୍ଣ ଲୋପ କରିଦେବାକୁ କଲିକତା ପ୍ରଭୃତି ନଗରୀରେ ଅଣଓଡ଼ିଆମାନଙ୍କଦ୍ୱାରା ଯେଉଁ ଚକ୍ରାନ୍ତର ଭିତ୍ତି ପତ୍ତନ ହୋଇଥିଲା, ସେହି ହୀନ ପ୍ରଚେଷ୍ଟା ଏବେ ବି ଅବ୍ୟାହତ ଅଛି । ଅତି ଅଳ୍ପଦିନର କଥା—ଜଣେ ମହାଭାରତୀୟ କବି ରବୀନ୍ଦ୍ରନାଥଙ୍କ ଶତବାର୍ଷିକ ଜନ୍ମୋତ୍ସବ ସାରା ଭାରତରେ ଏବଂ ଓଡ଼ିଶାରେ ମଧ୍ୟ ମହାସମାରୋହରେ ପାଳିତ ହେଉଥିଲାବେଳେ ସେହି ମହାଭାରତୀୟ କବିଙ୍କ କୌଣସି ଏକ ଲେଖାକୁ ଉଦ୍ଧାର କରି କଲିକତାର ଗୋଟିଏ ବହୁଜନପଠିତ ସାମୟିକ ପତ୍ରିକା "ଦେଶ" ଲେଖିଥିଲେ ଯେ ଓଡ଼ିଆ ଗୋଟିଏ ଅଲଗା ଭାଷା ନୁହେଁ । ଚଟ୍ଟଗ୍ରାମ ଅଞ୍ଚଳର ଭାଷାପରି ମୂଳ ବଙ୍ଗଭାଷା-ଠାରୁ ଏହା ସାମାନ୍ୟ ପୃଥକ୍ । ସେହି ପତ୍ରିକାର ସୁଯୋଗ୍ୟ ଲେଖକ ପୁଣି ମତ ଦିଅନ୍ତି ଯେ, ଏଇ ସାମାନ୍ୟ ପାର୍ଥକ୍ୟକୁ ଭିତ୍ତି କରି ଗୋଟାଏ ସ୍ୱତନ୍ତ୍ର ଭାଷା ଗଠନ କରିବା ଉଚିତ ନୁହେଁ ।

ଏତେ ବଡ଼ 'ବିରାଟ' ପତ୍ରିକାରେ ପ୍ରକାଶିତ ପ୍ରବନ୍ଧର ଉକ୍ତି ନିଶ୍ଚୟ କପୋଳ-କଳ୍ପିତ ନୁହେଁ । ଯଦି ଏହା ସତ୍ୟ ହୁଏ, ତେବେ କି ବିରାଟ ପ୍ରବଞ୍ଚନା, ବାସ୍ତବତା ବିରୁଦ୍ଧରେ କି ପ୍ରବଳ ଷଡ଼ଯନ୍ତ୍ର !! ଅଯଥା ଆତ୍ମଶ୍ଳାଘାର ମୋହରେ ପଡ଼ି ଏହି ଅବିବେକୀ ଦଳ ଇତିହାସକୁ ଅବହେଳା କରୁଛନ୍ତି, ବାସ୍ତବତାର ମୂଳୋତ୍ପାଟନ କରିବାକୁ ଚେଷ୍ଟା କରୁଛନ୍ତି । ସେମାନେ ଯଦି ଟିକିଏ ଶ୍ରମସ୍ୱୀକାର କରି ପ୍ରକୃତ ତଥ୍ୟ ଅନୁସନ୍ଧାନ କରିଥାନ୍ତେ, ତେବେ ନିଶ୍ଚୟ ଜାଣିଥାନ୍ତେ ଯେ ଏହି ପୁରାଣପ୍ରସିଦ୍ଧ ଓଡ଼ିଆ ଜାତି ଓ ଓଡ଼ିଆଭାଷା ବଙ୍ଗଭାଷାଠାରୁ ବହୁ ପ୍ରାଚୀନ । ଶାରଳା, ପଞ୍ଚସଖାଙ୍କ କଥା ଛାଡ଼ିଦିଅ, ଉପେନ୍ଦ୍ରଭଞ୍ଜ ଓ ତାଙ୍କ ସମସାମୟିକ କବିମାନେ ଯେତେବେଳେ ତାଙ୍କ ବିରାଟ କାବ୍ୟ-ସୌଧାବଳୀ ଏ ଜାତି ଭାଷା-ରାଜ୍ୟରେ ଗଢ଼ିତୋଳୁଥିଲେ, ସେତେବେଳେ ଆଧୁନିକ ବଙ୍ଗଳା-ଭାଷାର ସତ୍ତା ନ ଥିଲା । ତେବେ କେଉଁ ସାହସରେ ସେମାନେ ଏ ଆସ୍ଫାଳନ କରିପାରୁଛନ୍ତି । ଏହାର ଉତ୍ତର ଦେବାକୁ ଉତ୍କଳ-ଜନନୀର କ'ଣ ସନ୍ତାନ କେହି ନାହାନ୍ତି ?

କିନ୍ତୁ ଜଣେ ଥିଲା । ଜନ୍ମଭୂମିର ଏ ଦୁର୍ଦ୍ଦିନରେ ଆହ୍ୱାନ ସେ ଶୁଣିଥିଲା । ପଙ୍ଗୁ ଗିରି ଲଙ୍ଘନ କଲାପରି ସେ ଏ ପ୍ରବଞ୍ଚନାର ପାହାଡ଼କୁ ଧ୍ୱଂସ କରିବାକୁ ଆଗେଇ ଆସିଥିଲା । ନିଜ ଶାରୀରିକ ଶକ୍ତିର ସୀମିତ ପରିସର ମଧ୍ୟରେ ଅସୀମ ପ୍ରେରଣାର ଉତ୍ସ ସୃଷ୍ଟି କରିଥିଲା ସେ । ଗୋଟାଏ ସୁମହାନ ଜାତିର ଲୁପ୍ତପ୍ରାୟ ବିରାଟ ପରମ୍ପରାକୁ ସେଇ ପ୍ରେରଣାବଳରେ ସେ ପୁନରୁଜ୍ଜୀବିତ କରି ସେ ଦେଖେଇଦେଲା ଯେ ଓଡ଼ିଆ ଜାତି ହେୟ ନୁହେଁ, କାଙ୍ଗାଳ ନୁହେଁ । ଯେଉଁ ମାଟିରେ ଶାରଳା, ଜଗନ୍ନାଥ, ଭଞ୍ଜ, କବିସୂର୍ଯ୍ୟ ଜନ୍ମିଥିଲେ, ଯେଉଁ ମାଟି କୋଣାର୍କ ଓ ଭୁବନେଶ୍ୱରର କଳାଶିଳ୍ପୀଙ୍କୁ କୋଳରେ ଧାରଣ କରିଥିଲା, ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମଦେବଙ୍କର ସେଇ ମାଟି କେବେ ପ୍ରାଣହୀନ ନୁହେଁ; କେବେ ହୋଇ ନ ପାରେ । ଯେଉଁ

ସ୍ୱାର୍ଥସର୍ବସ୍ୱ ପଡ଼ୋଶୀ ଓ ଦାସ-ମନୋଭାବାପନ୍ନ କୁଳପାଂଶୁଳମାନେ ଏ ଜାତିର ସଂସ୍କୃତି ହୃଦୟଙ୍ଗମ କରି ନ ପାରି ନାସିକାକୁଞ୍ଚନ କରୁଥିଲେ, ସେମାନଙ୍କର ସେହି କୁଞ୍ଚିତ ନାସିକାଗୁଡ଼ିକର କର୍ତ୍ତନପାଇଁ ସେ କୋଷମୁକ୍ତ କରିଥିଲେ ଉନ୍ମୁକ୍ତ ମସୀର କରବାଳ ।

ସେଇ ଦେଶଭକ୍ତ କବି ସ୍ୱର୍ଗତ ବଚ୍ଛନ୍ଦଚରଣ ଆଜି ଆଉ ନାହାନ୍ତି । କିନ୍ତୁ ବଞ୍ଚିରହିଛି ଏବଂ ଚିରଦିନ ବଞ୍ଚିରହିବ ତାଙ୍କ ଦେଶପ୍ରେମ । ଜାତୀୟତା କ୍ଷେତ୍ରରେ ତାଙ୍କର ନୂତନ ଚିନ୍ତାଧାରା ଓ ଦିଗ୍‌ଦର୍ଶନ ଚିରଦିନ ଏ ଜାତିକୁ ଆଲୋକ ଯୋଗାଇବ ।

ଜାତୀୟ ଚେତନା ପ୍ରଚାର ଓ ପ୍ରସାରରେ ଏ ଦେଶର ଯୁବସମାଜ ମଧ୍ୟରୁ ସେ ସଂଗ୍ରହ କରିଥିଲେ କେତେ ଜଣ ଶିଷ୍ୟ ଓ ଜାତୀୟ ସଂଗ୍ରାମର ଯୁଝୁଆ ସୈନିକପରି ଏ ଦେଶର ଗୌରବକୁ ସମୁନ୍ନତ କରିବାକୁ ସେମାନଙ୍କୁ କାନେ କାନେ ଶିକ୍ଷା ଦେଇଥିଲେ । ସେଇମାନଙ୍କ ସମ୍ମିଳିତ ପ୍ରଚେଷ୍ଟାରେ ସେ ଦେଶ-ମାତୃକାର ପୂଜାପାଇଁ ଗଢ଼ିତୋଳିଲେ ମହାନ୍ ସାରସ୍ୱତ ଅନୁଷ୍ଠାନ "କଳିଙ୍ଗ-ଭାରତୀ ।"

ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ପ୍ରଭୃତି ଓଡ଼ିଆ ସାହିତ୍ୟ-ଗଗନର ଯେଉଁ ସମୁଜ୍ଜ୍ୱଳ ଜ୍ୟୋତିଷ୍କମାନେ ଦେଶବାସୀଙ୍କ ଅଜ୍ଞାନର ଘନପଟଳରେ ଆଚ୍ଛାଦିତ ହୋଇ ପଡ଼ିଥିଲେ, ଏହି ଦେଶଭକ୍ତ କବିଙ୍କର ପ୍ରଗାଢ଼ ପ୍ରଚେଷ୍ଟା ଫଳରେ ସେ ପଟଳର ଆସ୍ତରଣ ଧୀରେ ଧୀରେ କ୍ଷୀଣ ହୋଇଆସିଲା । ଓଡ଼ିଶୀ ସଙ୍ଗୀତ, ନୃତ୍ୟ ଓ କଳାକୁ ଯେଉଁ ଦେଶୀୟ ତଥାକଥିତ ଶିକ୍ଷିତସମାଜ ଘୃଣା-ଚକ୍ଷୁରେ ଦେଖିବାକୁ ଆରମ୍ଭ କରିଥିଲେ, ସେମାନେ ବଚ୍ଛନ୍ଦଚରଣଙ୍କର ଜ୍ୱଳନ୍ତ ମସୀର ପ୍ରେରଣାରେ ମତ ବଦଳାଇଲେ । ଗତି ପୁଣି ବଦଳିଗଲା । ଆଜି ଓଡ଼ିଶାରେ ପ୍ରତ୍ୟେକ ଅଭିଜାତ ଗୃହରେ ଓଡ଼ିଶୀ ନୃତ୍ୟର ନୂପୁରସିଞ୍ଜିନୀ, ପ୍ରତ୍ୟେକ ଜନସମାଗମରେ ଓଡ଼ିଶୀ ସଙ୍ଗୀତର ମଧୁର ମୂର୍ଚ୍ଛନା କଣ ଏ ଜାତି ପ୍ରାଣରେ ଏ ମହାନ୍ ସଂସ୍କାରକଙ୍କର ଗଭୀର ପ୍ରଭାବର ସୂଚନା ଦିଏ ନାହିଁ ।

ତଥାପି ହେ ବଚ୍ଛନ୍ଦଚରଣ, ବଙ୍ଗୀୟ ପତ୍ରିକାରେ ଉପରୋକ୍ତ ଉକ୍ତି ଦେଖି ମନେ ହୁଏ, ତୁମ କାର୍ଯ୍ୟ ସଂପୂର୍ଣ୍ଣ ହୋଇନାହିଁ । ତୁମେ ଶୀଘ୍ର ଚାଲିଗଲ । ଏହି ଅସୂୟାପ୍ରପୀଡ଼ିତ ଅର୍ବାଚୀନଗଣଙ୍କର ଉଦ୍ଧତ ଆସ୍ପର୍ଦ୍ଧାକୁ ଚିରଦିନପାଇଁ ବନ୍ଦ କରି ଦିଆଯାଇ ପାରିନାହିଁ । ତାହା ବନ୍ଦ କରିବାକୁ ତୁମେ ଯେଉଁ ଆହ୍ୱାନ ଦେଇଥିଲ, ତାହା ଏ ଜାତିର ଯୁବଶକ୍ତିକୁ ଶକ୍ତି ଦେଉ । ଶତ ଶତ ପ୍ରାଣରେ ବହୁ ଗୁଣରେ ପ୍ରତିଧ୍ୱନିତ ହେଉ କଳିଙ୍ଗ-ଭାରତୀର ଉଚ୍ଚ ଆଦର୍ଶ —ମାତୃଭୂମି କଳିଙ୍ଗ, ଉତ୍କର୍ଷ କଳାକ୍ଷେତ୍ର କୋଣାର୍କ ଓ କଳିଙ୍ଗର ମହାନ୍ ସାରସ୍ୱତ ପ୍ରତିଭାକୁ ଆଦର କରିବା ଆମର ଯୁବସମାଜ ଶିକ୍ଷା କରନ୍ତୁ । ସେହି ହେବ ତୁମ ଦେଶପ୍ରେମର ଯୋଗ୍ୟତମ ପୂଜା ।



# ସ୍ୱଚ୍ଛନ୍ଦ-ସ୍ମରଣେ

## ଶ୍ରୀ ବୀରହନୁମାନ ଶାସ୍ତ୍ରୀ

[ ଆହା ଧନୁର୍ଦ୍ଧର , ବୀରବର—ବୃତ୍ତେ ]

କଳଷାଠିଏ ତ ପୂରିନାହିଁ, ମୁଣ୍ଡବାଳ ଧଳା ହୋଇନାହିଁ
ଆଶାବାଡ଼ କେବେ ହାତୁ ଖସିନାହିଁ ପ୍ରୌଢ଼ ଲକ୍ଷଣ ତ ଦଶିନାହିଁ, ହେ ସୁଜନେ । ୧ ।

ଥିଲ ହାତର କଲମ ଟାଣ, ଭଲେ "କଳିଙ୍ଗ-ଭାରତୀ" ନାମ
କେତେ ଆଶା କେତେ ଉଦ୍ଦୀପନା ଧରି ଚାଳୁଥିଲ ସେ କର୍ମଠ ଯାନ, ହେ ସୁଜନେ । ୨ ।

କେଡ଼େ ସୁନ୍ଦର ମଧୁର ଗିର, ସ୍ନେହ-ପ୍ରୀତିର ଅକ୍ଷୟ ଘର
ଅସମର୍ଥ କଥା ମନେ ଆଣିନାହିଁ ଦିନେ ଏହି ତ କଳିଙ୍ଗ-ବୀର, ହେ ସୁଜନେ । ୩ ।

କରିଥିଲ ଯେ ସମାଲୋଚନା, ବଙ୍ଗ କବୀନ୍ଦ୍ରେ ଦେଇ ଚେତନା
ପୁରୁଣା ସାହିତ୍ୟେ ସୁରୁଚି-ପ୍ରାସାଦ ଗଢ଼ି ଥୋଇଛୁ ଏ ମହାମନା, ହେ ସୁଜନେ । ୪ ।

ନାକ ଟେକୁଥିଲେ ଯାହା ଚାହିଁ, ଏବେ ସେହି ଭଞ୍ଜସାହିତ୍ୟ ହିଁ
ବର୍ଷ ବର୍ଷ ଧରି ଆଲୋଚନା-କ୍ଷେତ୍ର କରି ରଖିଛୁ ଆମରି ପାଇଁ, ହେ ସୁଜନେ । ୫ ।

ସେ ଯେ ଏସବୁର ମୂଳେ ଥିଲ, ଜାତି ଗତିପଥ ଫେରାଇଲ
ଆପଣା ଘରର ସୁଆଦ ଦରବ ଏବ ଶିକ୍ଷିତଙ୍କୁ ଚଖାଇଲ, ହେ ସୁଜନେ । ୬ ।

ଗଢ଼ି "ଉତ୍କଳ-ଯୁବ-ସମାଜ", ବଢ଼ାଇ ଏ ଦେଶ ଯୁବ-ଓଜଃ
କଳିକିଲଗା ଏ ଇପ୍ଲାତ-କଳିଙ୍ଗ-ଜାତି-ପ୍ରାଣେ ପୂରାଇଲ ତେଜ, ହେ ସୁଜନେ । ୭ ।

ପାଦେ ଚାଲିବାକୁ ନାହିଁ ବଳ, ମୁଖେ ଓଜସ୍ୱୀ ପ୍ରଭାମଣ୍ଡଳ
କର୍ମପ୍ରାଣତାର ମୂର୍ତ୍ତି ଏ ସ୍ୱଚ୍ଛନ୍ଦେ ଶୁଆଇଲୁ ଶମଶାନ ତଳ, ରେ ଦଇବ । ୮ ।

ଦୁଃଖେ ବହୁଛି ଆଖିରୁ ପାଣି, ଚାଲିଗଲ ସେ ଯେ ମହାମାନୀ
ସେବାର ସୁଯୋଗ ଦେଇନାହିଁ ଦିନେ ଭାଳ ସନ୍ତାପିତ ଏହିକ୍ଷଣି, ଏ ଜୀବନ । ୯ ।

ଆଜ ଏ ଶୋକ-ଅନ୍ଧାର ଦିନେ, ମନେ ପଡ଼ୁଅଛି ଅନୁକ୍ଷଣେ
କ୍ଷମା କର ଅପରାଧ କିଛି ଥିଲେ ତୁମେ ଏବେ ତ ସ୍ୱର୍ଗରେ ଜଣେ, ହେ ସ୍ୱଚ୍ଛନ୍ଦ । ୧୦ ।

ନୀଳାଚଳନାଥ ଜଗନ୍ନାଥ, ଆର୍ତ୍ତ-ଜନର ସୁଗତିପଥ
କରୁଣ ମିନତି ଘେନ ଶିରୀପତି ବନ୍ଧୁ-ଆତ୍ମା ପାଉ ଚିର ଶାନ୍ତି, ହେ କେଶବ । ୧୧ ।





ଶ୍ରୀ ଗଣେଶ୍ୱର ମିଶ୍ର

ମଣିଷର ଜୀବନକୁ ଭାରତୀୟ ଦାର୍ଶନିକମାନେ ବୁଦ୍‌ବୁଦ ସହିତ ତୁଳନା କରିଥାନ୍ତି, କାରଣ ଜୀବନ କ୍ଷଣଭଙ୍ଗୁର । ଭକ୍ତକବି ମଧୁସୂଦନଙ୍କ ଭାଷାରେ କହିଲେ—"ଏହି ଜୀବନ ଖଣାଖଣ୍ଡି ତୁଲ୍ୟ । ଏହାର ଆଗମନ ଓ ପ୍ରତିଗମନର ସ୍ଥାନ ନିରୂପଣ କରିବା ଅସମ୍ଭବ ଅଟେ !" ଆମେ ସମସ୍ତେ ଦିନେ ମାଟିରେ ମିଶିଯିବା । ପରିବର୍ତ୍ତନଶୀଳ ମାନବ-ଜୀବନର ଏହାହିଁ ସନାତନ ଧର୍ମ । ତେବେ ବିଚ୍ଛନ୍ଦଚରଣଙ୍କ ମୃତ୍ୟୁରେ ଆମେ ଏତେ କ୍ଷୁବ୍ଧ କାହିଁକି ? ଏ ଦେଶର ସାହିତ୍ୟିକ-ସମାଜ ଆଜି ଶୋକାକୁଳ ହେବାର କାରଣ କ'ଣ ? ଏହା କ'ଣ ଆମର ଦୁର୍ବଳତା ?

ହୁଏତ ଏହା ଆମର ଦୁର୍ବଳତା । କିନ୍ତୁ ଏହି ଦୁର୍ବଳତା ହିଁ ବିଚ୍ଛନ୍ଦଚରଣ ଯେ ଆମର କିପରି ପ୍ରିୟ ଥିଲେ, ତାହା ସ୍ମରଣ କରାଇଦିଏ । ବିଚ୍ଛନ୍ଦଚରଣ ଥିଲେ ନିଷ୍ଠାପର ସାହିତ୍ୟ-ସାଧକ । ଆଜିକାଲି ଯୁଗରେ ସାହିତ୍ୟିକମାନଙ୍କ ସଂଖ୍ୟା ତ କଳନା କରିବା ସମ୍ଭବ ନୁହେଁ । ତେବେ ବିଚ୍ଛନ୍ଦଚରଣଙ୍କ ଭଳି ଜଣେ ନିଷ୍ଠାପର ଆଜୀବନ-ସାହିତ୍ୟ-ସାଧକ ଏ ଯୁଗରେ ବିରଳ । ବିଚ୍ଛନ୍ଦଚରଣ ପ୍ରାଚୀନ ଢଙ୍ଗରେ କବିତା ରଚନା କରୁଥିଲେ ଏବଂ ସାହିତ୍ୟକ୍ଷେତ୍ରରେ ପ୍ରାଚୀନ ଶୈଳୀ ଓ ଅଭିରୁଚିର ପ୍ରବର୍ତ୍ତନ ଚାହୁଁଥିଲେ । ସର୍ବୋପରି ପ୍ରାଚୀନ ଛନ୍ଦ, ଅଳଙ୍କାର ତଥା ରାଗରାଗିଣୀର ସମାବେଶରେ ଦେଶୀୟ ରୀତିରେ ଶୁଦ୍ଧପୂତ କବିତା-ରଚନା ଥିଲା ବିଚ୍ଛନ୍ଦଚରଣଙ୍କ ଆଦର୍ଶ । ସେ ଯେଭଳି ବହୁ ବାଧାବିଘ୍ନ ଓ ସମାଲୋଚନା ସତ୍ତ୍ୱେ ଆଜୀବନ ନିଜ ଆଦର୍ଶ ଓ ଲକ୍ଷ୍ୟପଥରେ ଅବିଚଳିତ ରହିପାରିଲେ, ତାହାର ପଟାନ୍ତର ନାହିଁ ! ଏହାହିଁ ତ ମହାପୁରୁଷ-ମାନଙ୍କ ବୈଶିଷ୍ଟ୍ୟ । ଏହି ବୈଶିଷ୍ଟ୍ୟ ବିଚ୍ଛନ୍ଦଚରଣଙ୍କର ଥିଲା ଏବଂ ସେଥିପାଇଁ ସେ ନମସ୍ୟ ।

କବି ବିଚ୍ଛନ୍ଦଚରଣଙ୍କ ସହିତ ସାକ୍ଷାତ୍ କରିବାର ସୁଯୋଗ ମୋ ଜୀବନରେ ଥରେ ଘଟିଥିଲା । ସେଇ ପ୍ରଥମ— ସେଇ ଶେଷ । ଆଜି ସମ୍ବାଦପତ୍ରରୁ ତାଙ୍କର ମୃତ୍ୟୁ ସମ୍ବାଦ ପାଇଲି । କିଛିଦିନ ପୂର୍ବେ ଶ୍ରୀ ମୁରଲୀ-ମୋହନ ଜେନା, ଏମ୍. ଏ. ସମ୍ବାଦପତ୍ରମାନଙ୍କରେ ଗୋଟିଏ ବିବୃତି ଦେଇଥିଲେ ଯେ କବି ବିଚ୍ଛନ୍ଦଚରଣ ଦୁଃସ୍ଥ ଅବସ୍ଥାରେ ଶଯ୍ୟାଶାୟୀ ହୋଇପଡ଼ିଛନ୍ତି । ତେଣୁ ଦେଶର ସହୃଦୟ ଜନସାଧାରଣ କବିଙ୍କର ଏହି ଦାରୁଣ ଦୁର୍ବିପାକରେ ସହାୟକ ହେବା ଉଚିତ । ହାୟ ରେ ଦୁର୍ଭାଗ୍ୟ ! ଓଡ଼ିଶାର ସବୁ ଲେଖକ କ'ଣ ଶେଷ ଜୀବନରେ ଦାରୁଣ ଅଭାବଅନଟନର ଶିକାର ହେଉଥିବେ ? ଏହା କ'ଣ ସେମାନଙ୍କ ସାହିତ୍ୟ-ସାଧନାର ପୁରସ୍କାର ? ଏଇ ତ ଅଳ୍ପ କେତେ ମାସ ତଳେ କବି ପ୍ରାଣକୃଷ୍ଣ ସାମଲ ଘୋର ଦୁଃଖ ଅଭାବ ମଧ୍ୟରେ ଇହଲୀଳା ସମ୍ବରଣ କଲେ । କବି ପଦ୍ମଚରଣଙ୍କ ଶେଷ ଜୀବନ ଯେପରି ମର୍ମନ୍ତୁଦ ହୋଇଥିଲା, ତାହା ଓଡ଼ିଶାର ସାହିତ୍ୟିକ-ଗୋଷ୍ଠୀ ନ ଜାଣିବା ହିଁ ଭଲ । ବିଚ୍ଛନ୍ଦଚରଣଙ୍କ ଭାଗ୍ୟରେ ମଧ୍ୟ ତାହାହିଁ ଥିଲା ! ଆଜୀବନ ନିଷ୍ଠାପର ସାଧନାପରେ ଓଡ଼ିଶାର ଗୋଟିଏ ପରେ ଗୋଟିଏ ପ୍ରତିଭା-ପୁଷ୍ପ ଏହିପରି ମାଟିରେ ମିଶିଯାଉଛି । ସେ ହିସାବ କେହି ରଖୁନାହିଁ । ଯେତେ ଦିନଯାଏଁ ଆମେ ସାହିତ୍ୟିକକୁ ସମ୍ମାନ ଦେଇ ଶିଖିନାହୁଁ, ସେତେ ଦିନଯାଏଁ ଆମ

ସାହିତ୍ୟ ବିଶ୍ୱ-ଦରବାରରେ କୌଣସି ସମ୍ମାନ ଦାବି କରିବା ଅର୍ଥହୀନ ନୁହେଁ କି ?

ସ୍ମୃତିର କଥା କହୁଛି······

ସେ ଏକ ଅବିସ୍ମରଣୀୟ ମଧ୍ୟାହ୍ନ । ମୁଁ ସେତେବେଳେ ଦଶମ ଶ୍ରେଣୀରେ ପଢ଼ୁଥାଏ । ଆମେ କେତେ ଜଣ ଛାତ୍ର "ଯୁଗଜ୍ୟୋତି" ବୋଲି ମାସିକ ପତ୍ରିକାଟିଏ ପ୍ରକାଶ କରିବାକୁ ଅତି ଉତ୍ସାହରେ ଲାଗିପଡ଼ିଥାଉ । ବିଜ୍ଞାନବାବୁଙ୍କ ପାଖକୁ ଯାଇଥିଲୁ ତାଙ୍କର ଆଶୀର୍ବାଦ ଭିକ୍ଷା କରିବାପାଇଁ ତଥା ଆମ ପତ୍ରିକାପାଇଁ ତାଙ୍କର ଗୋଟିଏ ଅଭିମତ ଆଣିବାପାଇଁ । ସେତେବେଳେ ବିଜ୍ଞାନବାବୁ କ'ଣ ଲେଖାଲେଖିରେ ବ୍ୟସ୍ତ ଥିଲେ । ଆମେ ପରିଚୟ ଦେବାରୁ ଆମକୁ ସ୍ନେହରେ ଚେୟାରରେ ବସିବାକୁ କହିଲେ । ତା' ପରେ ପଡ଼ିଲା ସାହିତ୍ୟ କଥା । ସେ ଆମକୁ ପ୍ରଶ୍ନ କଲେ—"ତୁମେମାନେ ଯେଉଁ ସାହିତ୍ୟ ସୃଷ୍ଟି କରିବାକୁ ଯାଉଛ, ତାର ଆଭିମୁଖ୍ୟ କ'ଣ ?" ଆମକୁ ଏ ପ୍ରଶ୍ନାନ୍ତରରେ ନୀରବ ହେବାର ଦେଖି ସେ ନିଜେ ଆମକୁ ବୁଝାଇଦେଲେ ଯେ ଆଧୁନିକ ଓଡ଼ିଆ ସାହିତ୍ୟ ଅନୁକରଣସର୍ବସ୍ୱ ହୋଇପଡ଼ୁଛି । ଆମେ ଆମ ଦେଶର ଜଳବାୟୁପ୍ରତି ଦୃଷ୍ଟି ନ ଦେଇ ବିଦେଶୀ ସାହିତ୍ୟର ଗଛ ଆଣି ଆମ ମାଟିରେ ରୋପଣ କରୁଛୁ । ଏହାର ଫଳ କ'ଣ ହେବ ?

ବିଜ୍ଞାନବାବୁଙ୍କର ଏଇ ପ୍ରଶ୍ନର ଉତ୍ତର ଭବିଷ୍ୟତର ଇତିହାସ ହିଁ ଦେବ । ମାତ୍ର ମୋର ଆଜି ମନେ ପଡ଼ୁଛି, ବିଜ୍ଞାନବାବୁଙ୍କର ସେଇ ଦୃଢ଼ ଦାମ୍ଭିକତାପୂର୍ଣ୍ଣ ବାଣୀ । ହାୟ ! ସେ ଆଉ ନାହାନ୍ତି । ତାଙ୍କରି ଯୋଗୁଁ ଜାତିର ଗୌରବ ଉପେନ୍ଦ୍ରଭଞ୍ଜଙ୍କୁ ଓଡ଼ିଶା ଚିହ୍ନି-ପାରିଛି, ମାତ୍ର ତାଙ୍କୁ ଆଜିଯାଏ କେହି ଚିହ୍ନିଲେ ନାହିଁ । ଆଜି ସେଇ ସ୍ୱର୍ଗତ ଆତ୍ମା ଉଦ୍ଦେଶ୍ୟରେ ଶ୍ରଦ୍ଧାଭକ୍ତିର ପୁଷ୍ପାଞ୍ଜଳୀ ଅର୍ପଣ କରି ମୁଁ ପ୍ରାର୍ଥନା କରୁଛି—ସେ ଆମକୁ ଆଲୋକ ଦିଅନ୍ତୁ । ସେଇ ଆଲୋକର ଉଦ୍‌ବେଳନ ପ୍ରତି ଓଡ଼ିଆର ଅନ୍ତରକୁ ପ୍ଲାବିତ କରୁ ।



# ଜନମେ ଗୋଟିଏ ମରଣେ କୋଟିଏ

କୁମାରୀ ତୁଳସୀ ଦାସ

( ଭୁଜଙ୍ଗ )

ଜୀବନ-ଯମୁନା ବନ୍ଧୁଗଲା ଯା'ର
ଢାଳି ପୂତ ସୁଧାଧାର
ଆହା ପଦ ଯାର ଭାଜଦେଲା ପ୍ରାଣୁ
ବିଶାଳ ବିଷାଦ ଭାର
ଆପଣାରେ ଜ୍ୱାଳି ଜୀଆଇଗଲା ଯେ
ଜାତିର ଜୀବନଲତା
ଲେଖଣୀମୁନରେ କହିଗଲା
କୋଟିଏ ଯୁଗର କଥା ।
କୀର୍ତ୍ତି ଯାହାର ଅମର ଅସର
କାଳର ଲଲାଟେ ଶୋହେ
ସାଧନା ଯାହାର ଅତୀବ ମହତ
ଜନ-ଜଗତ ବି ମୋହେ
ପ୍ରତିଭା-ସଳିତା ଜାଳି ନିଖିଳରୁ
ଟାଳିଲା ତିମିର ଗଡ଼
ଜଗତର ହୃଦେ ସୃଷ୍ଟି କରିଲା
ଶ୍ରଦ୍ଧା-ଶୁଭଗ-ଝଡ଼ ।
ଅସୀମ ସରଣୀ ସସୀମ କଲା ଯେ
ସରଗ ସୋହାଗ ଦେଇ
ଜନମେ ଗୋଟିଏ ମରଣେ କୋଟିଏ
ହୋଇଛ ରେ ସିନା ସେହି ।

# କବିତା-କୁମୁଦ

( ଏକ ଅଧ୍ୟୟନ )

**ଶ୍ରୀ ବ୍ରହ୍ମାନନ୍ଦ ଦାସ,** ବି. ଏ.

ବିପ୍ଳବୀ କବି ବିଚ୍ଛନ୍ଦଚରଣଙ୍କ ଅମର ପ୍ରତିଭାର ସ୍ୱାକ୍ଷର ବହନ କରି ଶହେଏକ ଗୋଟି ଗୀତିକବିତା-ସମ୍ବଳିତ ଏହି କାବ୍ୟ "କଳିଙ୍ଗ-ଭାରତୀର" ଆଦ୍ୟ ଅର୍ଘ୍ୟରୂପେ ୧୯୪୭ରେ ପ୍ରକାଶ ପାଇଲା । ଏଠାରେ ଗୀତିକବିତା ସମ୍ବନ୍ଧରେ କ୍ଷୀଣ ପରିଚୟ ଦେଲେ ଆଲୋଚନାଟି ସୁସ୍ପଷ୍ଟ ହେବାର ଗୁରୁ ସମ୍ଭାବନା ରହିଛି । ଗୀତିକବିତା ଭାବାବେଗର ସ୍ଫଟିକାୟିତ ଶୈଳ୍ପିକ ଅଭିବ୍ୟକ୍ତି । ଏହା କବିର ବ୍ୟକ୍ତିଗତ ଅନୁଭୂତିର ଆନନ୍ଦ-ବେଦନାରେ ପୂର୍ଣ୍ଣ । ସାବଲୀଳ ଗତି, ସଙ୍ଗୀତମୁଖରତା, ସୁଠାମ-ସୁନ୍ଦର-ସ୍ୱଳ୍ପାକୃତି ଅବୟବ—ଏହାହିଁ ଗୀତିକବିତାର ବୈଶିଷ୍ଟ୍ୟ ଏବଂ ପ୍ରାଚୀନ ରାଗରାଗିଣୀରେ ବିରଚିତ । ଏହି କାବ୍ୟର କବିତାଗୁଡ଼ିକ ଗୀତିକବିତାର ସମସ୍ତ ଧର୍ମରେ ଦୀକ୍ଷିତ । ସର୍ବପ୍ରଥମେ ନିଜର ଦୀନତ୍ୱ ପ୍ରକାଶ କରି କବି ତାଙ୍କର ଆବେଗଭରା ପ୍ରାଣପ୍ରଚୁର କବିତାଟିରେ କଳିଙ୍ଗ-ଭାରତୀ ତଥା କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କୁ ପୂଜା କରି ତାଙ୍କର କୃପା, ଆଶିଷ ପ୍ରାର୍ଥୀ ହୋଇ ପ୍ରାଣରେ ପ୍ରଭୂତ ସାନ୍ତ୍ୱନା ଓ ଭରସା ପାଇଛନ୍ତି ।

କର୍ମବୀର ବିଚ୍ଛନ୍ଦଚରଣ ବହୁ ସାଂଗଠନିକ କାର୍ଯ୍ୟ କରି ପୂର୍ବ-ସାହିତ୍ୟର ଗୌରବ ଫେରାଇଆଣିବାପାଇଁ ସଚେଷ୍ଟ ହୋଇଥିଲେ । ତାହା ଯେତେ ପରିମାଣରେ ସତ୍ୟ, ନିଜର ଲେଖନୀଚାଳନା କରି ଚିନ୍ମନିତ ବିପ୍ଳବର ମନ୍ତ୍ର ରଚନା କରିଥିଲେ—ତାହା ମଧ୍ୟ ସେହି ପରିମାଣରେ ସତ୍ୟ । ଉତ୍କଳ-ସାହିତ୍ୟର ଦୁର୍ଦ୍ଦଶା ଦେଖି ତାଙ୍କର ନେତ୍ରଯୁଗଳ ଲୋତକାପ୍ଲୁତ ହୋଇଉଠିଛି, ସେ ଉତ୍କଳଭାରତୀଙ୍କ ଚରଣରେ ଛିନ୍ନ ହୋଇ ବାର ବାର ଅସହାୟ ହୋଇ କାନ୍ଦି ଉଠିଛନ୍ତି ଏବଂ ପ୍ରଶ୍ନ କରିଛନ୍ତି—

"ମା କରୁଣା ନାହିଁ କି ?
ତବ ପୂଜନ ପୂତ ଭୂଇଁକି ?
କବି-କଞ୍ଜବନ ଭଞ୍ଜ-ଦେଶରେ ମା !
ମୂକ କାହିଁକି ବଲ୍ଲକୀ ?"

ତାଙ୍କର ଏହି ପ୍ରଶ୍ନପରେ ସେ ନିର୍ଭର ଭରସା ପାଇ ସତେ ଯେମିତି ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ଅତୀତର ପୂର୍ବ-ବିଭବ ଫେରାଇଆଣିବାପାଇଁ । "ସେକାଳ ବୀଣାପଞ୍ଚ ଏକାଳ ତାନ"ରେ ସେଥିପାଇଁ ସେ 'ପ୍ରାଚୀନ ଛନ୍ଦରେ ବିଶ୍ୱଭାବନାକୁ' କବିତା ମଧ୍ୟରେ ପ୍ରକାଶ କରିବାପାଇଁ ନବୀନ କବିଗଣଙ୍କୁ ଆହ୍ୱାନ କରିଛନ୍ତି ଏବଂ ଏହାହିଁ ତାଙ୍କ ସାହିତ୍ୟର ଆଦର୍ଶ ।

କବିତା-କୁମୁଦର ବିଭିନ୍ନ କବିତାଗୁଡ଼ିକୁ ବିଶ୍ଳେଷଣ କରି ସାଧାରଣତଃ ଚାରି ବା ପାଞ୍ଚୋଟି ବିଭାଗରେ ବିଭକ୍ତ କରାଯାଇପାରେ; ଯଥା— ମହାଜନଗଣଙ୍କର ପ୍ରଶସ୍ତିମୂଳକ କବିତା, ପ୍ରେମକବିତା (ଏହି ପ୍ରେମ-କବିତା ମଧ୍ୟରେ ପ୍ରଣୟୀ-ପ୍ରଣୟିନୀଙ୍କ ପତ୍ରଲିଖନ-ମୂଳକ କବିତା ବିଶେଷ ଉଲ୍ଲେଖଯୋଗ୍ୟ), ସ୍ୱଦେଶପ୍ରୀତି-ମୂଳକ କବିତା ଏବଂ ପାଶ୍ଚାତ୍ୟ ସାହିତ୍ୟର ବିଶିଷ୍ଟ କବିତା କେତୋଟିର ଅନୁବାଦ । ଏତଦ୍‌ବ୍ୟତୀତ କେତୋଟି ଶିଶୁ-କବିତା ମଧ୍ୟ ସ୍ଥାନ ପାଇଛି ।

ପ୍ରଥମତଃ ମହାଜନଙ୍କର ପ୍ରଶସ୍ତିମୂଳକ କବିତା ଆଲୋଚନା କଲେ ଦେଖାଯାଏ, କବି ଏକଦିଗରେ ବୀରଶ୍ରୀ ମଧୁସୂଦନ, ହରିହର, ପ୍ରହରାଜ, ଉତ୍କଳମଣି, ପଠାଣି ସାମନ୍ତ, ନୃସିଂହଚରଣ ଆଦିଙ୍କର ପୂଜା,

ଅନ୍ୟପକ୍ଷରେ ରାଧାନାଥ, ଗୋପାଳକୃଷ୍ଣ, ମଧୁସୂଦନ, କୁନ୍ତଳାକୁମାରୀ ଆଦି କବି-ପୂଜା କରିବା ସଙ୍ଗେ ସଙ୍ଗେ ଭାରତର ଗର୍ବ ବିଶ୍ୱକବି ରବୀନ୍ଦ୍ରନାଥ, ସି. ଭି. ରମଣ, ମହାତ୍ମା ଗାନ୍ଧୀଙ୍କର ପ୍ରଶସ୍ତି ମୁକ୍ତକଣ୍ଠରେ ସୁଲଳିତ ଛନ୍ଦରେ ଗାଇଯାଇଛନ୍ତି । ଉତ୍କଳର ବରପୁତ୍ରଗଣଙ୍କର ବନ୍ଦନା କରିବା ମୂଳରେ ସେମାନଙ୍କର ଦେଶପ୍ରତି ଅମର ଦାନର ସ୍ମରଣ କରାଇ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରାଇବା ହିଁ କବିଙ୍କର ମୁଖ୍ୟ ଲକ୍ଷ୍ୟ । ମହାଜନଗଣ ଉଲ୍‌କାସମ ଅନ୍ଧକାର ରାତିର ବୁକୁରେ ଆଲୋକର ଛନ୍ଦ ଜଗାଇ, ବିଶ୍ୱକୁ ଦୀପ୍ତ କରି ଶେଷରେ ଝରିପଡ଼ନ୍ତି ମୃତ୍ୟୁକୁ ଜୟ କରି । ଦେବାରେ ହିଁ ତାଙ୍କର ଜୀବନ । ଓଡ଼ିଶାର ଯେଉଁ ବୀରଗଣ ସ୍ୱଦେଶ ଓ ସାହିତ୍ୟପାଇଁ ଆତ୍ମବଳି ଦେଇଛନ୍ତି, ଆଜି ଯେତେବେଳେ ସେ ଦେଶ ଭ୍ରଷ୍ଟ, ଜୀର୍ଣ୍ଣ, ଛନ୍ଦହୀନ ହୋଇପଡ଼ୁଛି, କବି ସେମାନଙ୍କର ନବ ଅବତାରଙ୍କ ଆବିର୍ଭାବକୁ ଅପେକ୍ଷା କରି ରହିଛନ୍ତି ସ୍ୱଦେଶରେ ଏକ ନୂତନ ସୃଷ୍ଟି ପାଇଁ । ତାଙ୍କର ଭାଷାରେ—

"ଜନମନ-ନାୟକ ହେ ଆସ ଅବତରି
ଆଜି ଥରେ କରି ଉଚ୍ଚ ଏହୁ ବସୁନ୍ଧରୀ ।

* * * *

ପାଞ୍ଚଜନ୍ୟ ଶଙ୍ଖ ସମ ଘୋଷୁ ତୁମ୍ଭ ବାଣୀ
ଉତ୍କଳ-ଜୀବନ-ସ୍ରୋତ ବହୁ ହେ ଉଜାଣି
ତୁମ୍ଭ ହାତଗଢ଼ା ଭୂଇଁ
ଧନ୍ୟ ହେଉ ଆଜି ବାରେ ପଦ ତୁମ୍ଭ ଛୁଇଁ ।"

( ଉତ୍କଳମଣି ଗୋପବନ୍ଧୁ )

ସ୍ୱଦେଶ-ପ୍ରୀତିମୂଳକ କବିତା ମଧ୍ୟରେ "ସେ ତ ସ୍ୱଦେଶ ମୋହର", "ଜିଜ୍ଞାସା", "ଉତ୍କଳ ଚିନ୍ତାମଣି ଚଉତିଶା" ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ଅନୁପମ ସୃଷ୍ଟି । "ଜିଜ୍ଞାସା"ର—

"ଖାରବେଳ-ସୁହାସିନୀ ତୁହି ମା ଟିକି ?
ବିପୁଳ-ବାରଣ-ସେନା- ପଦ-କମ୍ପ୍ର-ଅପଘନା
ବୀର-ମେଦମୟ ତୋର ଏହି ମାଟି କି ?"ରେ

ଯେଉଁ ଆତ୍ମା କାରୁଣ୍ୟ କରୁଛି; "ସେ ତ ସ୍ୱଦେଶ ମୋହର" ରେ—

'ଛବି' ରେ ଜନମ ଲଭି ଧନ୍ୟ ମୋ ଜୀବନ
ସ୍ୱଦେଶର ମାଟି ମୋରେ ପୂଜାର ଚନ୍ଦନ ।"

ପଂକ୍ତି ମଧ୍ୟରେ ସେହି ଆତ୍ମା ସେହି ଦେଶର ଧୂଳି ବୋଲି ଗର୍ବରେ ବକ୍ଷସ୍ଫୀତ କରାଇ କହୁଛି "ଏଇ ମୋର କଳାମୟ ବୀର ଜନ୍ମଭୂମି ।" ପ୍ରକୃତରେ କହିବାକୁ ଗଲେ ଗୋଦାବରୀଶଙ୍କ "ତୁଙ୍ଗ ଶିଖରୀ ଚୂଳ, କୁଞ୍ଜ-କାନନମାଳ" ଏବଂ କାନ୍ତକବିଙ୍କ "କୋଟି କୋଟି କଣ୍ଠେ ଆଜ ଉଠୁରେ ଗମ୍ଭୀରେ ବାଜି" ଶୀର୍ଷକ କବିତାଦ୍ୱୟର ଅପୂର୍ବ ଝଙ୍କାର ଆମ୍ଭମାନଙ୍କ ପ୍ରାଣକୁ ଯେପରିଭାବରେ ପ୍ରାଣବନ୍ତ କରେ, ଉଦ୍ଦୀପ୍ତ କରେ, ଜାଗ୍ରତ କରାଏ, ଅବିକଳ ସେପରିଭାବରେ ବିଚ୍ଛନ୍ଦଙ୍କ ଉକ୍ତ କବିତାଦ୍ୱୟ ଆମ୍ଭମାନଙ୍କୁ ପୁଲକାପ୍ଲୁତ କରେ ଏବଂ ଶକ୍ତିଯୁକ୍ତ କରେ । ଏହି କବିତାଦ୍ୱୟରେ ସରଳ କାନ୍ତ ପଦାବଳୀ, ସୁଚ୍ଛନ୍ଦିତ ସ୍ୱର ଯୋଜନା ମଧ୍ୟରେ ଯେଉଁ ସାଂଗୀତିକ ମୂର୍ଚ୍ଛନା ନିହିତ, ତାହାର ପଟାନ୍ତର ନାହିଁ । ଏଇ କଳାମୟ ଉତ୍କଳର ଶିଳ୍ପୀ ଦିନେ ଗଢ଼ିଥିଲେ କୋଣାର୍କ, ଧର୍ମପ୍ରାଣ ରାଜବଂଶ ଗଢ଼ିଥିଲେ ଜଗନ୍ନାଥ ମନ୍ଦିର, ଆଜି କଳାପ୍ରାଣ କବିଗଣଙ୍କ ଅଗ୍ନିମୟ ତପସ୍ୟାର ଫଳସ୍ୱରୂପ ଜନ୍ମନେଲା ଅସଂଖ୍ୟ ଛନ୍ଦୋବଦ୍ଧ କାବ୍ୟ । ଏଇ ଦେଶର ବଣିକ ସାଗରର ନୀଳ ବକ୍ଷ ଚିରି ଜାଭା, ସୁମାତ୍ରା, ଚୀନରୁ ବୋହି ଆଣିଲେ ଅମୂଲ୍ୟ ସମ୍ପଦ, ଏଇ ଦେଶର ବୀର ଯୋଦ୍ଧାଗଣ ରକ୍ତଦାନ କରି ଅଶୋକଙ୍କୁ ଶିଖାଇଦେଲେ "ହିଂସା-ପ୍ରଣୋଦିତ ତରବାରିର ଜୟ, ଜୟ ନୁହେଁ ।" କିନ୍ତୁ ଆଜି ସେସବୁ ନାହିଁ— କୋଣାର୍କ ଭଗ୍ନ, ବୀରଗଣ ନୀରବ, କାବ୍ୟଗ୍ରନ୍ଥ ଅବହେଳିତ, ସାଗର ଭୟପ୍ରଦ । ବାସ୍ତବିକ ଆଜି ଉତ୍କଳର ଏ ଦୁର୍ଦ୍ଦଶା ଦର୍ଶନ କରି ଦୁଃଖ ଲାଗେ ।

କବିଙ୍କ କୋମଳପ୍ରାଣରେ ସେଇ ଆଘାତ ଆସିଛି ଏବଂ ସେ "ଉତ୍କଳ-ଚିନ୍ତାମଣି ଚଉତିଶା"ରେ ଉତ୍କଳର ପୂର୍ବ-ଗୌରବ ବର୍ଣ୍ଣନା କରି ବର୍ତ୍ତମାନର ଦୁର୍ଗତି ପରିସ୍ଥିତିକୁ ଦର୍ଶାଇ, ଉଦ୍‌ବୋଧନ ଦେଇ ଶେଷରେ ଏହି ଦେଶରେ ସେ ଗତ ସୁବର୍ଣ୍ଣ-ଯୁଗ ଫେରିଆସିବ, ଏହି ବଳିଷ୍ଠ ଆଶା ମଧ୍ୟ ମନ ମଧ୍ୟରେ ପୋଷଣ କରିଛନ୍ତି । ଖଣ୍ଡାୟତଗଣଙ୍କ ଜାଗରଣର ବାର୍ତ୍ତା ପ୍ରେରଣ କରିଛନ୍ତି । ପୁଣି କବି ଫେରି ଚାହିଁଛନ୍ତି ବାରବାଟୀ ଦୁର୍ଗକୁ । ତାଙ୍କ ନୟନଯୁଗଳରୁ ଅଭିମାନ ଓ କୋହମିଶା ଅଶ୍ରୁ ଝରିପଡ଼ୁଛି, ଉତ୍କଳୀୟଙ୍କୁ ତାର ଗତ ଗୌରବ, ହୃତ ବିଭବର ଇଙ୍ଗିତ ଦେଇ ସେମାନଙ୍କ ବୀର୍ଯ୍ୟହୀନ ଶରୀରରେ ପ୍ରଭୂତ ପ୍ରେରଣା ଦେବାପାଇଁ କହୁଛନ୍ତି—

"ବାରବାଟୀ ଲୋତକରେ ଲୋତକ ମିଳାଇ
କାନ୍ଦନାହିଁ ଯଦି ବାରେ କାନ୍ଦ ଆଜି ଭାଇ !"

ସ୍ୱଦେଶ-ପ୍ରୀତିମୂଳକ କବିତା ପରେ କବିଙ୍କର ପ୍ରେମମୂଳକ କବିତା ଅନୁଧ୍ୟାନ କଲେ, ଆମେ ତାଙ୍କର ମୌଳିକତା ସ୍ପଷ୍ଟରୂପେ ଜାଣିପାରୁ । ପ୍ରେମ ଜୀବନର ଏକ ମୁଖ୍ୟ ବିଭବ । ଯୁଗେ ଯୁଗେ ପ୍ରେମହିଁ ତରୁଣ କବିପ୍ରାଣକୁ ଉନ୍ମତ୍ତ କରି ସେମାନଙ୍କୁ ସାହିତ୍ୟ-ସାଧନାରେ ବ୍ରତୀ କରାଇଛି । ଜୀବନରେ ଆସେ ବସନ୍ତ, ମଳୟ ସ୍ପର୍ଶରେ ପ୍ରାଣ ମୁଞ୍ଜରୀଉଠେ, ପ୍ରେମର ଆଦିମ କାମନାର ତରଙ୍ଗ ଚିତ୍ତର ନିଭୃତ କୋଣରେ ମଥା ପିଟେ । ସେ ସାଥୀପାଇଁ ବ୍ୟାକୁଳ ହୋଇଉଠେ । ନିକଟରେ ଜଣକୁ ପାଇ ଧରଣୀରେ ସେ ଦେଖେ ନୂତନ ପଥ, ନବୀନ ସୃଷ୍ଟି, ଉଜ୍ଜ୍ୱଳ ଆଲୋକ—ସବୁ ସଦ୍ୟ, ସବୁ ନିର୍ମଳ, ସବୁ ସୁନ୍ଦର । ସେ ପ୍ରାଣର ସ୍ୱତଃସ୍ଫୂର୍ତ୍ତ ଚିନ୍ତାରାଜ୍ୟକୁ ରୈଖିକ ରୂପ ଦିଏ; ଲଳିତ ଛନ୍ଦରେ ଗାଇଯାଏ ଆପଣା ପ୍ରେମର ସଙ୍ଗୀତ । କବି ବଞ୍ଛାନିଧିଚରଣଙ୍କ ଜୀବନରେ ସେଇପରି ପ୍ରେମର ଫୁଲଟିଏ ଜଳିଉଠିଥିଲା ତାଙ୍କର ପ୍ରେମିକା ସହିତ ପ୍ରଥମ ଦୃଷ୍ଟିପାତରେ । "Love at first sight" ବା ଏହିପ୍ରକାର 'ପ୍ରଥମ ଦର୍ଶନରେ ପ୍ରେମ'ର ମୂଳରେ ମନସ୍ତାତ୍ତ୍ୱିକ ସତ୍ୟ ନିହିତ । ବାଲ୍ୟକାଳରେ ଶିଶୁର ଅତି ପ୍ରିୟପାତ୍ରୀ, ସେ ମା' ହେଉ, ଭଉଣୀ ହେଉ, ରୂପ ସହିତ ଯୌବନକାଳର ସାକ୍ଷାତ୍ ହୋଇଥିବା ଯେକୌଣସି ନାରୀର ସାମ୍ୟ ଥିଲେ ଦେଖିବାମାତ୍ରେ ଏପ୍ରକାର ପ୍ରେମ ବା କାମ ନିଷ୍ଟିତଭାବରେ ଜାତ ହୁଏ । କବି ସେଇ ସୁନ୍ଦରୀକୁ ନିଜର କରିବାର ଏକାନ୍ତ କଳ୍ପନା କରିଥିଲେ ମଧ୍ୟ ବାସ୍ତବତାର ଅତ୍ୟାଚାରରେ ସେ ଦୂରେଇଯାଇଛି । କବି ହତାଶ ହୋଇ ବିକଳ କଣ୍ଠରେ ଗାଇଛନ୍ତି—

"କଳପନା ମହୀରୁହ ବାସ୍ତବ-ଅଶନି
ଜାଳିଦେବ ବନ୍ଧୁ ଆରେ ! ଥିଲି ନାହିଁ ଜାଣି
ଚିର-ବିଚ୍ଛେଦ-ବଡ଼ବେ
ଲୁଚିଯାଇ ବାରେ ଆଉ ନ ହୋଇବୁ ଉଦେ ।"

( ଆଦ୍ୟ ଭେଟ )

ପ୍ରକୃତପକ୍ଷରେ ବିରହରେ ହିଁ ପ୍ରେମ ମଧୁରତର ହୁଏ, ପବିତ୍ର ହୁଏ । ଦୁଃଖକଷ୍ଟ, ବିରହ-ହତାଶ ଅଗ୍ନିଦାହ ମଧ୍ୟରେ ପ୍ରେମର ଶୁଦ୍ଧତା ପରୀକ୍ଷା କରାଯାଇ-ଥାଏ । ବିରହୀ କବିର ଏକନିଷ୍ଠ ପ୍ରେମର ମହତ୍ତ୍ୱର-ପରାକାଷ୍ଠା ଏହି କାବ୍ୟର "ବିଚ୍ଛେଦ ଚଉତିଶା", "ବିରହ ବାରମାସୀ", "ପ୍ରିୟତେ" ଆଦି କବିତାରେ ପାଉଁ । ବିରହପରେ ମିଳନ ଅଧିକ ମଧୁର ହୋଇଥାଏ । ମାତ୍ର ଯେଉଁ ବିରହ ବା ବିଚ୍ଛେଦ ଜୀବନବ୍ୟାପୀ ରହିଯାଏ ଓ କବି ଯେତେବେଳେ ଜାଣିପାରେ ଯେ ସେ ତାର ପ୍ରଣୟିନୀକୁ ଆଉ ନିଜର କରିପାରିବ ନାହିଁ, ସେ ବ୍ୟାକୁଳଚିତ୍ତରେ ତାର ସ୍ମୃତିକୁ ସମ୍ବଳ କରି ଲକ୍ଷ୍ୟ ତାରକା ଭିତରେ ନିଜର ମନର ତାରକାକୁ ଖୋଜିବୁଲେ । ବଞ୍ଛାନିଧିଚରଣ "ମୋ ସୁକ୍ଷ୍ମ-ବସନ୍ତ"ରେ ପ୍ରିୟାର ସ୍ମୃତିକୁ ମନ ମଧ୍ୟରେ ଉଚ୍ଚାରଣ କରିଛନ୍ତି ।

ଏତଦ୍‌ବ୍ୟତୀତ ପ୍ରେମ ଦୁର୍ବଳକୁ ବଳବାନ କରାଏ, ସାହସୀ କରାଏ । ପ୍ରେମର ପ୍ରେରଣାରେ ଜଣେ ଅନ୍ୟ ଜଣକପାଇଁ ଜାତି, ମାନ, ବଂଶର ବନ୍ଧନ ଦଳି ଆଗେଇ ଆସେ ହସି ହସି । ଜାଣାସୁ କବି ବାଞ୍ଛାନିଧିଚରଣ 'ମଞ୍ଜୁଳା-ମାଧବ'ରେ କାଞ୍ଚୀବାଳା ମଞ୍ଜୁଳାର ଉତ୍କଳୀୟ ବୀର ମାଧବ ସହିତ ପ୍ରଣୟରେ ଯେଉଁ ସାହସିକତା ଦେଖାଇଛନ୍ତି, ତାହା ଅତି ଚମତ୍କାର । ମାନସିଂ ପ୍ରେୟସୀଙ୍କର ଯୌବନୋଜ୍ଜ୍ୱଳ ଅପୂର୍ବ ଲାବଣ୍ୟ ସନ୍ଦର୍ଶନ କରି ପାଗଳ ହୋଇଉଠିବା ସଙ୍ଗେ ସଙ୍ଗେ ତାଙ୍କୁ ଦୂରରେ ରହିବାପାଇଁ ଅନୁରୋଧ କଲାପରି କବି ମଧ୍ୟ ସ୍ୱପ୍ରିୟାଙ୍କୁ କହୁଛନ୍ତି :—

"ପ୍ରାଣ-ବାଞ୍ଛସୀ ରେ, ତୁ ଏ ବେଶ ହୋଇବୁଂ ନାହିଁ ।
ଏ ବେଶ ହୋଇଲେ ପାଷାଣ ତରଳେ
ମୋ ଧୃତି ରହିବ ନାହିଁ ।"

ମାତ୍ର ଏପରି ଅନୁରୋଧ କେବଳ ମୁଖର, ପ୍ରାଣର ନୁହେଁ । ଯେ ନିଜ ପ୍ରାଣର, ସେ କି କେବେ ଦୂରରେ ରହିପାରେ ? କବିଙ୍କ ପ୍ରେମକବିତା ମଧ୍ୟରେ ପ୍ରେମିକ-ପ୍ରେମିକାଙ୍କ ପତ୍ରଲେଖନର ସଂଖ୍ୟା ପ୍ରାୟ ନଅଗୋଟି । ଏହିପରି କବିତାର ଆଦର୍ଶ ଉପେନ୍ଦ୍ରଙ୍କ କାବ୍ୟରୁ ଆନୀତ ହେଲେ ମଧ୍ୟ ସେଥିରେ ପାତ୍ର ବା ପାତ୍ରୀ ରାଜପୁତ୍ର ଚନ୍ଦ୍ରଭାନୁ ବା ରାଜକନ୍ୟା ଲାବଣ୍ୟବତୀ ନୁହନ୍ତି । ଉତ୍କଳର ସୁଦୂର ଗ୍ରାମର ବାଳିକା ରତ୍ନମାଳା, ସ୍ନେହଲତା, ହୀରାମଣି, କାମିନୀପ୍ରଭୃତି ସହରର କଲେଜଛାତ୍ର ମାଧବ, ବ୍ରଜକିଶୋର, ମୋହନ ଓ କିଶୋରଙ୍କର ଏକନିଷ୍ଠ ପ୍ରେମର ସ୍ୱାକ୍ଷର ବହନ କରି ଏହି ପ୍ରେମପତ୍ରମୂଳକ କବିତାଗୁଡ଼ିକ ଯେ ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଦାନ, ଏଥିରେ ସନ୍ଦେହ ନାହିଁ । ମଧୁର ଛନ୍ଦ ମଧ୍ୟରେ ପ୍ରେମର ଅତି ବାସ୍ତବ ଓ ମନୋଜ୍ଞ ଅନୁଭୂତି ପରିବେଷଣ କରାଯାଇଛି ଓ ତାହା ଅତୀବ ଚିତ୍ତାକର୍ଷକ ହୋଇ-ଉଠିଛି । ଏଗୁଡ଼ିକ ମଧ୍ୟରେ କବିଙ୍କ ସ୍ୱାନୁଭୂତି ପ୍ରକାଶ ପାଇ ରସବନ୍ତ ହୋଇଛି । ଲଜ୍ଜାରେ ହିଁ ପ୍ରେମ ସୁନ୍ଦର, ଶୋଭିତ ହୁଏ । ପ୍ରବାସୀ ପ୍ରେମିକ ମାଧବ ତାର ବାଲ୍ୟ-ପ୍ରେମିକା ରତ୍ନମାଳାର ପତ୍ରର ଉତ୍ତର ଦେବାକୁ ଯାଇ କହୁଛି—

"ଧୂଳିଖେଳ ବେଳ ସରିଗଲା ବେଗେ
ହୋଇଲୁ ତୁହି ଏକାଦଶୀ
ଗଲା ନୂଆ ଝିଲ ଅଙ୍ଗରେ ତୋ ଖେଳ
ଲାଜରେ ପୁରି ଗଲୁ ଲସି ।
ଏଣିକି ! ଗୁହିଁଲେ ନତକରି ମଥା
ଗୋଡ଼ ବୁଢ଼ା ଅଙ୍ଗୁଠିରେ ମହୀ ତରି
ଲାଜଭରେ କହିଲୁ କଥା ।"

ପ୍ରବାସରେ ରହି ପ୍ରିୟାଠାରୁ ପତ୍ର ପାଇ ପ୍ରେମିକର ପଛକଥା ମନେ ପଡ଼ିଯାଉଛି । ସେ ଲେଖିଯାଉଛି ଜୀବନର ଯେତେକ ଅଭୁଲା ସ୍ମୃତିକୁ ଅତି ଆବେଗରେ । କେତେବେଳେ ବା କାମନା-ଦଗ୍ଧ ହୋଇ ଅଂଗସ୍ପର୍ଶ-ପାଇଁ ବ୍ୟାକୁଳ ହୋଇ ପବନ ସମ ଉଡ଼ିଯାଇ ପ୍ରଣୟିନୀର ମୁଖ ଚୁମ୍ବନ କରିବାପାଇଁ ଆଶା-ପୋଷଣ କରୁଛି ପ୍ରଣୟିନୀ । ସେତେବେଳକାର କନ୍ୟା-ବିକ୍ରିର ନୀତିକୁ ନିନ୍ଦା କରି ସେମାନଙ୍କ ପ୍ରେମ ପ୍ରତିବାଦ କରିଛି, ପ୍ରେମିକପାଇଁ ପ୍ରେମିକା ଚିରକୁମାରୀ ରହିବାପାଇଁ ପ୍ରତିଜ୍ଞା କରିଛି । ପ୍ରେମର ଭାଷା ଆଖି ଆଗିରେ ହୁଏ ଏବଂ କବିଙ୍କ ଭାଷାରେ "ଲୁହି, କୋହ କେତେ କଥା କହନ୍ତି ରେ ରସନା ନ ପାରେ ବଖାଣି"ରେ ପ୍ରେମର ଯେଉଁ ବଳିଷ୍ଠ ଅଭିବ୍ୟକ୍ତି, ତାହା ଚିରନ୍ତନ ।

କବି ଯେ କେବଳ ଓଡ଼ିଶାର ଭଞ୍ଜଯୁଗୀୟ କବିଗଣଙ୍କୁ ସମ୍ମାନ ଦେଖାଉଥିଲେ ତାହା ନୁହେଁ, ପାଶ୍ଚାତ୍ୟ କବିଙ୍କପ୍ରତି ମଧ୍ୟ ତାଙ୍କର ଶ୍ରଦ୍ଧା ଥିଲା । ପାଶ୍ଚାତ୍ୟ କାବ୍ୟ-ଜଗତ ମଧ୍ୟକୁ ତାଙ୍କର ଗଭୀର ପ୍ରବେଶ ଥିଲା । କବି ଇଂରାଜ-କବି **T. Campbell**ଙ୍କ **Lord Ullin's Daughter, Shelly**ଙ୍କର **Love Philosophy, Indian Serinad** କବିତାନିଚୟକୁ ଯଥାକ୍ରମେ "ପ୍ରମଦା-ଜୟନ୍ତ" "କେହି ତ ଦରଦୀ ଜନ ଏକାକୀ ନାହିଁ" ଓ "ମୋର ଚିର ସମାଧି ହେଉ ଭରସା

ତୋର” ଶୀର୍ଷକ କବିତାସମୂହ ଅନୁବାଦ କରିବାରେ ଯେଉଁ ଅପୂର୍ବ ଦକ୍ଷତା ଦେଖାଇଛନ୍ତି, ସ୍ୱାଭାବିକତାରେ ସେମାନ ମୂଳ କବିତାମାନଙ୍କୁ ଟପିଯାଇଛି ବୋଲି ବିଶ୍ୱାସ କରାଯାଏ । ଶେଲୀ “Love Philosophy”ରେ ପ୍ରେମର ସତ୍ୟ ନିରୂପଣ କରିଛନ୍ତି—

The Fountains mingle with the river
And the rivers with the ocean
The winds of Heaven mix forever
With a sweet emotion.
Nothing in the world is single
All things by a low divine
In one spirit meet and mingle
Why not I with thine.”

ଏହାର ଅନୁବାଦ ହୋଇଛି—

“ଝରଣା ସରିତ କୋଳେ ଢାଳଇ ପୀରତିସ୍ରୋତେ
ସରିତ ସାଗରେ ମିଳେ ନିବିଡ଼େ ଯାଇଁ
ପବନେ ଲୋଡ଼ଇ ପବନ ପ୍ରେମେ ଦିଏ ଆଲିଙ୍ଗନ
କେହି ତ ଦରଜ଼ାଜନ ଏକାକୀ ନାହିଁ
ଏକସାଥେ ମିଳେ ଅପର
ତୋହ ମୋହ ମେଳ ନୁହେଁ କି ଦୋଷ ମୋର ?”

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ମୂଳ କବିତାର ମର୍ମ ଏଠାରେ ଅତି ବଳିଷ୍ଠଭାବେ ପ୍ରକାଶ ପାଇଛି ସରଳ ଛନ୍ଦ ମଧ୍ୟରେ ।

“ପିଲାଙ୍କ ଉତ୍କଳମଣି,” “ମାଆଙ୍କ ବର ଓ ଅଭିଶାପ”, “ଜହ୍ନ” ପ୍ରଭୃତି କେତେଗୋଟି ଶିଶୁ-କବିତା ଅତି ଉଚ୍ଚକୋଟୀର ହୋଇପାରିଛି । “ମୋ ସୁନାଗୁନ୍ଦ” ଓ “ପଲ୍ଲୀବଧୂ” କବିତାଦ୍ୱୟ କବିଙ୍କର ଉନ୍ନତ ସୃଷ୍ଟି । ଓଡ଼ିଆ ସାହିତ୍ୟର ବାତ୍ସଲ୍ୟ-ପ୍ରେମମୂଳକ କବିତା ଯେକୌଣସି ସାହିତ୍ୟର ଗର୍ବ ଓ ଗୌରବର ସମ୍ପଦ ହୋଇପାରେ । ପ୍ରାଚୀନ ଗ୍ରନ୍ଥସିକ କବିଗଣଙ୍କର ଶୃଙ୍ଗାରରସାପ୍ଲୁତ କାବ୍ୟ ମଧ୍ୟରେ ବାତ୍ସଲ୍ୟ-ପ୍ରେମର ପ୍ରାଣସ୍ପର୍ଶୀ ବିଳାପ ପାଠକଚକ୍ଷୁକୁ ଅଶ୍ରୁଳ କରିଦିଏ ।

“ମୋ ସୁନାଗୁନ୍ଦ”ରେ କବିଙ୍କର ଶିଶୁପୁତ୍ରର ଅପମୃତ୍ୟୁ ହୋଇଛି—ପିତାପ୍ରାଣ କାନ୍ଦିଉଠିଛି । କବି ଶିଶୁର ସୁନ୍ଦର ରୂପ ଓ ତାର ବିଭିନ୍ନ ସୁମଧୁର ସ୍ମୃତିକୁ ମନେପକାଇ ବୁକୁଫଟା କରୁଣ ଚିତ୍କାର କରୁଛନ୍ତି । ଶିଶୁର ପାଦଠେଲରେ ଦୁଆରରୁ କାଳି ପଡ଼ିଛି ଖଟରେ, ସେ ଦାଗ ନ ନିଭିବାପୂର୍ବରୁ ତାର ଆତ୍ମା ନିଭିଯାଇଛି । କବି କରୁଣ ସ୍ୱରରେ ବାହୁନୁଛନ୍ତି—

“ଗୋଡ଼ରେ ଠେଲି ଦେଇ ଦୁଆତ ମୋର
ଖଟେ ଢାଳିଛୁ କାଳି ଦାଗ ତୋହର
ବାପା ! ନିଭି ତ ନାହିଁ
ତୋ ପ୍ରାଣ-ଦୀପ ଧାଡ଼ା ଦେଲା ନିଭଇ ।”

ବୈକୁଣ୍ଠନାଥଙ୍କ “ମୃତ୍ତିକାଦର୍ଶନ”ରେ ଶିଶୁର ମୃତ୍ୟୁରେ କବି ଯେପରି ବ୍ୟଥିତ ହୋଇ ବଳିଷ୍ଠ ଓ ସ୍ୱରସାମ୍ୟ ଶବ୍ଦ ଯୋଜନାରେ ନାନା ଦର୍ଶନ ବାଢ଼ିଛନ୍ତି, ଏଠାରେ ତାହା ନାହିଁ । ଖାଣ୍ଟି ଓଡ଼ିଆପ୍ରାଣର କରୁଣ କ୍ରନ୍ଦନ ସରଳ ଅଥଚ ପ୍ରାଣସ୍ପର୍ଶୀ ଭାଷାରେ ପ୍ରକାଶ ପାଇଛି । ପ୍ରକୃତ ସ୍ୱରରେ କବିତାଟିକୁ ପାଠ କଲେ ଯେକୌଣସି ପାଠକର ପ୍ରାଣ ଆର୍ଦ୍ର ହୋଇଉଠିବ ।

ଉତ୍କଳର ପଲ୍ଲୀବଧୂର ରୂପ ଓ କର୍ମପ୍ରବଣତା ସବୁଯୁଗର କବିଶିଳ୍ପୀଙ୍କର ସୃଷ୍ଟିର ଉପାଦାନ ହୋଇ-ପାରିଛି । ପଲ୍ଲୀବଧୂର ସାରଲ୍ୟ, ସହାନୁଭୂତି ପ୍ରାଣ, ଲଜ୍ଜାବିଜଡ଼ିତ ଚରଣର ଛନ୍ଦ, କବିଙ୍କୁ ସହଜରେ ମୁଗ୍ଧ କରିଥାଏ । କବି ବଚ୍ଛନ୍ଦଚରଣ “ପଲ୍ଲୀବଧୂ”ରେ ପଲ୍ଲୀବଧୂର ସମସ୍ତ ମହତ୍‌ଗୁଣ ବର୍ଣ୍ଣନା କରି ସେମାନେ ଯେ ଏକ କଳାପ୍ରାଣ, ଶାନ୍ତ ଜାତିର ଜନନୀ—ଏକଥା ସ୍ମରଣ କରାଇ ଦେଇଛନ୍ତି ।

କବିଙ୍କ ଅନ୍ୟ କ୍ଷୁଦ୍ର କବିତାଗୁଡ଼ିକ ମଧ୍ୟରେ “ଶକୁନ୍ତଳାଙ୍କ ପତିଗୃହଯାତ୍ରା”ରେ କର୍ତ୍ତବ୍ୟ ଶିକ୍ଷା ଓ “ଭକ୍ତରେଣୁ”ରେ ମାତୃଶିକ୍ଷା ବିଶେଷ ଉଲ୍ଲେଖଯୋଗ୍ୟ ।

କାବ୍ୟଟିର ପ୍ରତି କବିତା· କଳହଂସ କେଦାର, ଶଙ୍କରାଭରଣ, ଆହାରୀ, କାମୋଦୀ, ଚମ୍ପୂ ଆଦି ବିଭିନ୍ନ

ଓଡ଼ିଶୀ ରାଗରାଗିଣୀରେ ପୁଣି ଗୋପାଳକୃଷ୍ଣ, ଗୌରଚରଣ ଆଦିଙ୍କର ବିଶିଷ୍ଟ ଜନପ୍ରିୟ ଗୀତସମୂହ ସୁରରେ ରଚିତ ହୋଇ ମଧୁର ତଥା ଉଚ୍ଚକୋଟୀର ହୋଇପାରିଛି । ଇଂରେଜ-ପୂର୍ବ ଯୁଗରେ ଭାରତରେ ଦେଶୀ-ଭାଷାମାନଙ୍କ ମଧ୍ୟରେ ଓଡ଼ିଆର ଛନ୍ଦ ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ବିଚ୍ଛନ୍ଦବାବୁ ସେଇ ବିଶିଷ୍ଟତାର ଭକ୍ତ ଓ ସେଥିର ଜଣେ ଶ୍ରେଷ୍ଠ ସାଧକ । 'କୋଇଲି' ଓ 'ଚଉତିଶା' ମଧ୍ୟରେ ଓଡ଼ିଆପ୍ରାଣର ଭାଷା ଆଦିଯୁଗରୁ ଆଜଯାଏଁ ସୁନ୍ଦରଭାବେ ପ୍ରକାଶ ପାଇଛି । ରାଗରାଗିଣୀସମ୍ବଳିତ 'ଚଉତିଶା' ରଚନା ଓଡ଼ିଆ ସାହିତ୍ୟ ଭିନ୍ନ ଅନ୍ୟ କୌଣସି ଭାଷାରେ ଦେଖିବାକୁ ମିଳେ ନାହିଁ । ଜାତୀୟପ୍ରାଣ ବିଚ୍ଛନ୍ଦଚରଣ ପରମ୍ପରାର ବଶବର୍ତ୍ତୀ ହୋଇ ଏବଂ ସେଥିର ଲଳିତ ଛନ୍ଦରେ ମୁଗ୍ଧ ହୋଇ "ବିଚ୍ଛେଦ ଚଉତିଶା", "ଉତ୍କଳ-ଚିନ୍ତାମଣି ଚଉତିଶା" "ପ୍ରିୟତମା କୋଇଲି" ଆଦି କବିତାରେ ବ୍ୟଥିତ ଲଳିତ ହୃଦୟର ସଙ୍ଗୀତ ଗାଇଛନ୍ତି ।

ବିଚ୍ଛନ୍ଦଚରଣଙ୍କ କବିତାଗୁଡ଼ିକରେ ପ୍ରାଚୀନ ତଥା ମଧ୍ୟଯୁଗୀୟ କବିଙ୍କର ପ୍ରଭାବ ବେଶ ସ୍ପଷ୍ଟ । ଅଧିକାଂଶ ରୂପକଳ୍ପ, ଉପମା, ଅଳଙ୍କାର ପ୍ରଭୃତି ବ୍ୟବହାରରେ ପୂର୍ବଯୁଗୀୟ କବିଙ୍କଠାରେ ସେ ଋଣୀ । ବିଶେଷ-ଭାବେ କବି ପାଶ୍ଚାତ୍ୟ ସାହିତ୍ୟରେ ବିଜ୍ଞ ଥିବାରୁ ନିଜର କବିତା ମଧ୍ୟରେ ନୂତନ ନୂତନ ରୂପକଳ୍ପ ଓ ଭାବଧାରା ସଂଯୁକ୍ତ କରି ପାଠକପ୍ରାଣରେ ଅଲୌକିକ ଆନନ୍ଦ ସଞ୍ଚାର କରିବାକୁ ସମର୍ଥ ହୋଇଛନ୍ତି ।

ବିଚ୍ଛନ୍ଦଚରଣ କେବଳ କବି ନ ଥିଲେ, ସେ ଥିଲେ ସମାଲୋଚକ, ସଂଗଠକ ତଥା ସଂପାଦକ । ଆଜି ବି ତାଙ୍କ ପ୍ରାଣ ଓଡ଼ିଆ ଜାତି ଓ ଭାଷାପାଇଁ କାନ୍ଦିଉଠୁଥିବ । ଆଜି ବି ଦେଶର ଚତୁର୍ଦ୍ଦିଗରେ ସାହିତ୍ୟର ଅରାଜକତା, ସାହିତ୍ୟରେ ଭ୍ରଷ୍ଟତା । ଓଡ଼ିଆପ୍ରାଣରେ ଜାତୀୟ ଚେତନା ହଜିଯାଇଛି, ବଦଳରେ ଆସିଛି ଈର୍ଷା, ସ୍ୱାର୍ଥପରତା । କେତେକ ଅର୍ଥଲୋଭରେ ପାଠ୍ୟପୁସ୍ତକ ରଚନା କରି ସାହିତ୍ୟପ୍ରାଣକୁ ହତ୍ୟା କରି ତୃପ୍ତ ହୋଇଛନ୍ତି, କେତେ ଜଣ ଏଇ ଅଶୁଭ ମୁହୂର୍ତ୍ତରେ ବଙ୍ଗଳା, ଇଂରାଜୀ କବିତାର ଅନୁସରଣ କରି ଲେଖି-ଯାଇଛନ୍ତି ଦୁର୍ବୋଧ କ୍ଲିଷ୍ଟ ଓଡ଼ିଆ 'କବିତା' । ସାହିତ୍ୟ ନାମରେ ଯେଉଁ ଅଖାଦ୍ୟ ଶସ୍ତା ଉପନ୍ୟାସ ରଚନା କରିଯାଉଛି, ସେଥିରେ ଆମ ସମାଜର ଚିତ୍ର ନାହିଁ, ଜାତିର ରୂପ ନାହିଁ । ସେଇଗୁଡ଼ିକଦ୍ୱାରା ଜାତୀୟ ଚରିତ୍ର ନଷ୍ଟ ହେଉଛି । ଆଜି ପ୍ରାଚୀନ ବିଶିଷ୍ଟ କବିଙ୍କ ରଚିତ ପୋଥିର ଅନୁସନ୍ଧାନ ବା ସମାଲୋଚନା ହେଉ ନାହିଁ; ଜାତୀୟତାର ବାୟୁମଣ୍ଡଳ ସୃଷ୍ଟି କରିବାପାଇଁ କେହି ପ୍ରାଣପଣ ଉଦ୍ୟମ କରୁନାହାନ୍ତି । ସାହିତ୍ୟ ଏକ ବ୍ୟବସାୟରେ ପରିଣତ ହୋଇଛି । ଏହି ଅନ୍ଧକାରର ରାଜତ୍ୱକୁ ଧ୍ୱଂସ କରି ଆଲୋକର ସନ୍ଧାନ ଦେବାପାଇଁ ଆଜି ବି ବିଚ୍ଛନ୍ଦଙ୍କର ନୂତନ ଅବତାରର ଜନ୍ମପାଇଁ ଛୁର୍ଣ ଉତ୍କଳ ଅପେକ୍ଷା କରିରହିଛି ।



# ଆଜି ଏଇ ଦେଶପ୍ରାଣରେ.....,

**ଶ୍ରୀ ଚନ୍ଦ୍ରଶେଖର ନନ୍ଦ**, ବି.ଏସସି (ଅନର୍ସ)

[ ରାଗ—ଆହାରୀ ]

( ୧ )

ଲିଭି ଆସୁଥିଲା 'ନିଜତ୍ୱ'ର ଶିଖା
ବିଦେଶୀ ପ୍ରବଳ ବାତ୍ୟାରେ
'ସ୍ୱତନ୍ତ୍ରତା' ଆସି ଛିଡ଼ାହେଲା ଦୂରେ
ଛାୟା ଯଥା କାୟା ପାଶରେ
ଉତ୍କଳୀ, ପାଶ୍ଚାତ୍ୟ ସଭ୍ୟତା-ସୁଅରେ
ଦେଉଥିଲା ମେଲି ତା ସାହିତ୍ୟ-ତରି
ଭୁଲି ସେ ଅମଡ଼ା ପଥରେ ।

( ୨ )

କିଏ ଆସି କହି ଉଭାହେଲା ଏବେ
କହିଲା, ମଙ୍ଗ ଭିଡ଼ିଧରି
ଏ ଗତି ତୋହର ନୁହେ ଆଶ୍ରିବାର
ଯାଉଛୁ କା'ରେ ଅନୁସରି
ଉତ୍କଳୀ, ଭୁଲିଗଲୁଣି କି ଅତୀତ
ଭୁଲିଗଲୁଣି କି କୋଣାରକ ଶିରି
ଏବେ ବି ତୋ ଦେହେ ଜୀବିତ ।

( ୩ )

ଭଞ୍ଜ, କବିସୂର୍ଯ୍ୟ, ଦୀନକୃଷ୍ଣ ପରି
ଜନ୍ମିଲେ ତୋହର ଦେଶରେ
ଲେଖନୀମୁନରେ କୋଣାରକ-କଳା
ବାଢ଼ିଲେ ଲେଖନ-ପଟରେ
ଉତ୍କଳୀ, ବଂଶଧର ପରି ତୁହି ରେ
କି କରମ ଆଜି କରିବାକୁ ଯାଉ
ଭୁଲି ନିଜ ଗରିମାରେ ।

( ୪ )

ଶୁଣିଲା ଉତ୍କଳୀ ସେ ମହତ ବାଣୀ
ମଥା ତା ପାଶରେ ପାତିଲା
'କଳିଙ୍ଗ-ଭାରତୀ' ନାମ ଧରି ଆସି
ବିନମ୍ର ହୋଇ ସେ କହିଲା,
ବିଚ୍ଛନ୍ଦ ! କଳିଙ୍ଗ-ଭାରତୀର ଲୁହ
କେଉଁ ପରକାରେ ଦୂର କରିଦେବୁ
ଉପାୟ ଆମ୍ଭରେ ତୁ କହ ।

( ୫ )

ରଚିଲା ଉତ୍କଳୀ ତୋ ଲେଖନୀମୁନେ
ରାଗିଣୀ ଆଶାରେ କବିତା
କବି-କଞ୍ଜବନ କଳିଙ୍ଗ ପରାଣେ
ଜାଳିଲା "ଗରବ" ସଳତା
ବିଚ୍ଛନ୍ଦ-ଭାଷାରେ ଉତ୍କଳୀ ଭାସିଲେ
କଳ୍ପଦ୍ରୁମ ତା'ର ପତ୍ର ମେଲିଦେଲା
ଉତ୍କଳର ପୁରପଲ୍ଲୀରେ ।

( ୬ )

ଜଳିଗଲା ଦିନେ ହା-ହାକାର କରି
ବିଚ୍ଛନ୍ଦ - ଜୀବନ - ସଳିତା
ଜାଳି ଦେଇଗଲା ଉତ୍କଳୀ ପରାଣେ
ଜାତୀୟ ସାହିତ୍ୟ ମମତା
ବିଚ୍ଛନ୍ଦ ! ଆତ୍ମା ଆଜି ତୋର ଦୂରରେ
ପ୍ରତିଧ୍ୱନି କରୁ ତା'ର ଆଜି ଶୁଭେ
ଆଜି ଏଇ ଦେଶପ୍ରାଣରେ ।



# ଭାଇ ବିଚ୍ଛନ୍ଦଚରଣଙ୍କ ପ୍ରଥମ ଶ୍ରାଦ୍ଧ

## ଶ୍ରୀ ଚକ୍ରଧର ମହାପାତ୍ର

ଏସବୁ ଅନିଚ୍ଛାସତ୍ତ୍ୱେ ଘଟୁଛି; ସେପରି ଆନ୍ତରିକତା ଦେଖାଯାଉନାହିଁ । ଗୋପବନ୍ଧୁ, ଚନ୍ଦ୍ରଶେଖର, ମଧୁସୂଦନଙ୍କ ସ୍ମୃତିପୂଜା ବାର୍ଷିକ ହୁଏ ସତ; କିନ୍ତୁ ସେ ପୂଜା ଖବରକାଗଜରେ ଯେତିକି ଆଡ଼ମ୍ବରରେ ବାହାରେ, ସତ୍ୟ ଯେ ଏସବୁ ସମାରୋହରେ ନ ହେବା-ଯୋଗୁଁ ଜାତୀୟତାର ପତନ ବୃଦ୍ଧି ପାଉଛି । ତେଣୁ ଏପରି କାର୍ଯ୍ୟରେ ଉଦ୍ୟୋକ୍ତାମାନେ ଜାତିଗଠନରେ ଏକ ସଦୁଦ୍ୟମ କରୁଛନ୍ତି ନିଶ୍ଚୟ ।

ଗୋଟିଏ କଥା ଭାବିବାକୁ ହେବ । ପୂର୍ବସୂରୀମାନେ ହିନ୍ଦୁଧର୍ମରେ ଷଡ଼ଜୟନ୍ତୀ ସୃଷ୍ଟି କରିଛନ୍ତି । ଏହି ଛଅଟି ଜୟନ୍ତୀ ହେଲା ରାମ, କୃଷ୍ଣ, ବାମନ, ନୃସିଂହ, ଶିବ, ଦୁର୍ଗା । ଆଉ କାହାରିପାଇଁ ଉତ୍ସବର ବା ବିଧି-ବିଧାନର ବ୍ୟବସ୍ଥା ନାହିଁ । ଏହି ଛଅ ଯେ ହିନ୍ଦୁ-ଧର୍ମରେ ଥିଲେ, ଆଉ କେହି ନ ଥିଲେ, ତା' ତ ନୁହେଁ । ସହସ୍ର ସହସ୍ର ମଧ୍ୟରୁ ବଛା ହିସାବରେ ଏହି ଛ ଦିନରେ ଛ'ଜଣଙ୍କ ଜୟନ୍ତୀ ବର୍ଷରେ ନିର୍ଦ୍ଦିଷ୍ଟ ହୋଇଛି ।

ଏକ୍ଷଣି ଧରାଯାଉ, ଗୋଟିଏ ଅନୁଷ୍ଠାନ—ଉତ୍କଳ ସାହିତ୍ୟ-ସମାଜ । ଯେବେ ବୈଷ୍ଣବ ପାଣିଙ୍କଠାରୁ ଆରମ୍ଭ କରି ସାରଳାଦାସଙ୍କ ଯାଏ ପ୍ରତି ସାହିତ୍ୟିକଙ୍କ ଲାଗି ଜନ୍ମ ହେଉ ବା ମୃତ୍ୟୁ ହେଉ ବାର୍ଷିକ-ଉତ୍ସବ ପ୍ରତିପାଳନ କରାଯାଏ, ତେବେ ୩୬୫ ଦିନ ତ ଅଣ୍ଟିବ ନାହିଁ ।

ସାଂସ୍କୃତିକ କ୍ଷେତ୍ରକୁ କିଏ ଅଧିକ ଦାନ କରିଛି, ତାର ସିଦ୍ଧାନ୍ତ କରିବା ମୁସ୍କିଲ । ତେଣୁ ସବୁଦଳ, ସବୁ ମତ; ସବୁଧର୍ମ, ସବୁଜାତି ପ୍ରତି ସହାନୁଭୂତି ରଖିଲେ ସାହିତ୍ୟ ସମାଜପରି ଗୋଟିଏ ଅନୁଷ୍ଠାନକୁ ପ୍ରତ୍ୟହ ୫।୬ ସଭା କରିବାକୁ ପଡ଼ିବ । ଗୌଡ଼ୀୟ ସଂପ୍ରଦାୟ, ଶଙ୍କରପନ୍ଥୀ, ବୌଦ୍ଧ ସଂପ୍ରଦାୟ, ଜୈନସଂଘ, ମହିମାଧର୍ମ, ଅଣୁ-ଧର୍ମ, ଖ୍ରୀଷ୍ଟ, ମୁସଲମାନ, ପାର୍ଶୀ, ଶିଖ କିଏ ବା ଏ ରାଜ୍ୟରେ ନାହାନ୍ତି ବା କାହାର ସାହିତ୍ୟ ବା ସାହିତ୍ୟିକ ନାହାନ୍ତି ? ତାପରେ ବଙ୍ଗ, ବିହାର, କେରଳ, ଗୁର୍ଜର ପଞ୍ଜାବ, ଆନ୍ଧ୍ର, ତାମିଲ ଅଛନ୍ତି । ଏ ତାଲିକା କଲେ ମଣିଷ ବାଉଳା ହୋଇଯିବ । ସାହିତ୍ୟିକଙ୍କପରେ ସଙ୍ଗୀତଜ୍ଞ, ଶାସ୍ତ୍ରଜ୍ଞ ପଣ୍ଡିତ ଦାର୍ଶନିକ ପ୍ରାଚ୍ୟ-ପାଶ୍ଚାତ୍ୟ ବିଦ୍ୟା-ବିଶାରଦ, କଂଗ୍ରେସ କମ୍ୟୁନିଷ୍ଟ ଆଦି ବିଭିନ୍ନ ରାଜନୈତିକ ଦଳ, ଶିଳ୍ପବିତ୍, ଜ୍ୟୋତିଃଶାସ୍ତ୍ରଜ୍ଞ କେତେ ଅଛନ୍ତି । କାହାକୁ ବା ହେୟ କରିବା ?

ଯଦୁମଣି ମହାପାତ୍ର କଣ ଏ ଦେଶକୁ କିଛି କଣ୍ଟ୍ରିବ୍ୟୁସନ କରିନାହାନ୍ତି । ବାସ୍ତବିକ ତାଙ୍କର ପୂଜା ତ ନାହିଁ ? ଏପରି କେତେ ଥିବେ । ଜୀବିତଙ୍କୁ ତ ଆମେ ପୂଜା କରିନାହୁଁ । କାରଣ ଜୀବନ୍ତରେ ଗୁଣବନ୍ତ ଲୋକଙ୍କୁ ବଞ୍ଚାଇ ରଖିବାକୁ ଆମର ଉଦ୍ୟମ ନ ଥାଏ; ମଲେ ଆମେ ସ୍ମୃତିପୂଜା କରୁଁ । ଏ ସ୍ମୃତିପୂଜା ମରିବାର ବର୍ଷକପରେ ଥରକ ଲାଗି କରାହେଲେ ଏଣିକି ଭଲ ହେବ । କାରଣ ହିନ୍ଦୁଧର୍ମରେ ଉତ୍ତର ଷୋଡ଼ଶ ଅନ୍ତ୍ୟେଷ୍ଟି କର୍ମରେ ଦ୍ୱାଦଶାହ ଦିନ ହୋଇ ମୃତ ଆତ୍ମାକୁ ପିତୃଗୋଷ୍ଠୀଭୁକ୍ତ କରି ଦିଆଯାଏ । ତାପରେ ବର୍ଷିକିଆରେ ମୃତ ବ୍ୟକ୍ତିର ଆଦ୍ୟ ସାମ୍ବତ୍ସରିକ ଶ୍ରାଦ୍ଧ ଆଡ଼ମ୍ବରରେ ଅନୁଷ୍ଠିତ ହୋଇଥାଏ । ସେହିପରି ବର୍ଷଟିଏ ପୂରିଲେ ଯେଉଁ ଉତ୍ସବ, ତାହାହିଁ ସେ ସାହିତ୍ୟିକ ହୁଅନ୍ତୁ, ଶିଳ୍ପୀ ହୁଅନ୍ତୁ, ସଙ୍ଗୀତ-ବିଶାରଦ ହୁଅନ୍ତୁ, ତାଙ୍କ ପାଇଁ କରାଯାଉ । ସେଥିରେ

କୁହାଯାଉ ଯେ, ସେ ପୂର୍ବ ପିତୃଗୋଷ୍ଠୀରେ ମିଳିତ ହେବାକୁ ଆମ୍ଭେମାନେ ଆଜି ନିର୍ଦ୍ଦେଶ ଦେଉଛୁଁ ।

ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ବହୁତ ବେଶୀ କିଛି କରିଛନ୍ତି ବୋଲି କେତେ ଜଣ କହନ୍ତି । କେତେକ ଜଣ ତାଙ୍କର ମଧ୍ୟ ସେ ଗୌରବ ସମର୍ଥି ପାରନ୍ତି ନାହିଁ । ସେ ଯାହାହେଉ ସାହିତ୍ୟିକଭାବେ ସେ ଜୀବିତ ଥିବାବେଳେ ଚିହ୍ନାଜଣା ଥିଲେ । ତେଣୁ ଏହି ବାର୍ଷିକ ଶ୍ରାଦ୍ଧସଭାରେ ତାଙ୍କୁ ସାହିତ୍ୟିକ ମାନବ ଗୋଷ୍ଠୀ ରେ ସାମିଲ କରାଯାଉ ।

ବିଚ୍ଛନ୍ଦ 'କଳଙ୍ଗଭାରତୀ' ଉତ୍ସବ କରି ନ ଥିଲେ ଭଞ୍ଜ ଲୁଚିଯାଇଥାନ୍ତେ—ଏପରି ଯେଉଁମାନେ ମତ ଦେବେ ବା ଦେଇଛନ୍ତି, ସେ ସିଦ୍ଧାନ୍ତରେ ସନ୍ଦେହ ଅଛି । ତାଙ୍କଦ୍ୱାରା ଭଞ୍ଜ ଭଲ ହୋଇଛନ୍ତି କି ମନ୍ଦ ହୋଇଛନ୍ତି, ସେ ବିଚାର ଦଳେ ସୂକ୍ଷ୍ମଦର୍ଶୀ କରିବୁଛନ୍ତି; କିନ୍ତୁ ଏହା ସତ୍ୟ ଯେ ଭଞ୍ଜଙ୍କ ପଣରେ ଆର୍ତ୍ତିବାବୁଙ୍କ ପ୍ରାଚୀ ଅନୁଷ୍ଠାନପରେ ବିଚ୍ଛନ୍ଦ ଖବରକାଗଜରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଛନ୍ତି ।

ଗୋଟିଏ କଥା, ଦେଶର ପଚଶ ପଶମାଣ ବ୍ୟକ୍ତି ପଞ୍ଚସ୍ତର ପରିମାଣ ବ୍ୟକ୍ତିଙ୍କୁ ଅନ୍ଧକାର ମଧ୍ୟରେ ବା ସମୁଦ୍ର ବ୍ୟବଧାନରେ ରଖି ଏସବୁ ବିଷୟରେ ମତାମତ ଦେଇଥାନ୍ତି । ଓଡ଼ିଆ ଜାତିର ଶହେରେ ଶହେ ଲୋକ ବିଚ୍ଛନ୍ଦଙ୍କ ଏ ଆନ୍ଦୋଳନ ପୂର୍ବରୁ ଭଲ ବୋଲି ହେଉ ମନ୍ଦ ବୋଲି ହେଉ ଭଞ୍ଜଙ୍କୁ ଚିହ୍ନିଥିଲେ । କିନ୍ତୁ ପଚଶ ପରିମାଣ ମଧ୍ୟରେ ଚିହ୍ନା କବିମାନଙ୍କୁ ଧରିଯାଉ ରାଧାନାଥଙ୍କୁ ପଞ୍ଚସ୍ତର ଆଦୌ ଚିହ୍ନନ୍ତି ନାହିଁ ।

ସଂସ୍କୃତ ଲେଖା ଗୀତଗୋବିନ୍ଦ ଓଡ଼ିଆ ଜାତିର ଶହକୁ ଶହେ ଲୋକ ଜାଣନ୍ତି ଆଦିବାସୀଙ୍କୁ ଛାଡ଼ । ହାଡ଼ି-ଡମ ସାହିରେ ଘୁଙ୍ଗୁ, ଢୋଲ ସଙ୍ଗରେ "ନନ୍ଦନ୍ଦନଚନ୍ଦନ-ମିଦ୍ଧୂକରଣ" ଧ୍ୱନି ଶୁଭେ । ମଙ୍ଗୀମାଇପେ ହାଣ୍ଡିମଙ୍ଗଳ, କାଂଚଘଷା ମଙ୍ଗଳ ସାଥିରେ ଜଗନ୍ନାଥମଙ୍ଗଳ, ଗୀତଗୋବିନ୍ଦ ପଢ଼ନ୍ତି; କିନ୍ତୁ ଏ ଆଧୁନିକମାନଙ୍କୁ କେହି ଚିହ୍ନନ୍ତି ନାହିଁ ।

ବିଚ୍ଛନ୍ଦ ଦେଖିଲେ, ଏପରି ଏକ ପଦାର୍ଥରେ ହାତ ଦେବି, ଯହିଁରେ ଦୁନିଆ ମତେ ଚିହ୍ନିବ । ମୁଁ ତାଙ୍କ ସହିତ ଗତ ସତେଇଶ ବର୍ଷଧରି ଭଲ ଚିହ୍ନାଜଣା ଥିଲି । ତେଣୁ ଏହା ସାହସର ସହିତ କହିବି । ତେଣୁ ସେ ଏସବୁ କାମରେ ଲାଗିଥିଲେ । ତଥାପି ଉତ୍ସାହୀ ଯୁବକ କବି ଶ୍ରଦ୍ଧେୟ ମୁରାରିମୋହନଙ୍କ ଅନୁରୋଧ ଏଡ଼ି ନ ପାରି ଦି'ପଦ ଲେଖିଲି । ବିଚ୍ଛନ୍ଦଙ୍କପରି ବହୁ ସାହିତ୍ୟିକ ଆଜି ବହୁ ନିର୍ଯ୍ୟାତନା ମଧ୍ୟରେ କାଳ କଟାଉଛନ୍ତି । ସେ ଚାଲିଯାଇଛନ୍ତି କିନ୍ତୁ ତାଙ୍କର କୃତକୀର୍ତ୍ତି 'କଳଙ୍ଗ-ଭାରତୀ' ଜୀବନ୍ତ ରଖିବାକୁ କାମନା । ଯେବେ ସେ ସେଥିରେ କିଛି ତ୍ରୁଟି କରି-ଯାଇଛନ୍ତି, ସେତ ଆଉ ନାହାନ୍ତି । ତେଣୁ ତାର ସଂସ୍କାର କରାଯାଇ ଉକ୍ତ ଅନୁଷ୍ଠାନକୁ ଅଧିକ ଜୀବନ୍ତ-ଭାବେ ପାଳନ କରିବା ଦେଶର କର୍ତ୍ତବ୍ୟ ହେଉ ।



# ସେନ ଭକତ ପ୍ରଣତି....

## ଶ୍ରୀ ବାଞ୍ଛାନିଧି ଦାସ

ଋଷିପଲ୍ଲୀ ରେ ଉଜ୍ଜ୍ୱଳ ଜ୍ୟୋତିଷ୍କ ଏକ
ଉତ୍କଳ-ଭାରତୀ-ପୂଜା-ମଣ୍ଡପର
ଯୋଗ୍ୟ ପୁରୋଧା ପୂଜକ ।
ଜୀବନଟା ତାର ପୁଣ୍ୟ ବଳିଦାନ
ଉତ୍କଳ-ଭାରତୀ-ପୀଠେ
ଜାତିର ଅତୀତ ପ୍ରତିଭା ସ୍ମରଣେ
ତା ପ୍ରାଣ ଶିହରିଉଠେ ।
ଜାତୀୟ ସାହିତ୍ୟ ସଂଗ୍ରାମ ପ୍ରାଙ୍ଗଣେ
ସେ ବିପ୍ଳବୀ ମହାରଥୀ
ନ ମାନନ୍ତି ଝଡ଼ଝଞ୍ଜା ଉପହାସ
ନିର୍ଭୟେ କରନ୍ତି ଗତି ।

ଟଂଚାଇ ଦେଇଛନ୍ତି ବଖତବେଳରେ
ଖିଆଲେ ନ ଯାଇ ଭାସି
ଜଳାଞ୍ଜଳି ଦେଇ ଭଞ୍ଜ-କବିସୂର୍ଯ୍ୟ
ଦୁର୍ଲ୍ଲଭ ସାଧନାରାଶି ।
ଶରୀର ଶକତି ତୁଚ୍ଛ ମଣିଥିଲ
ମନବଳେ ଥିଲ ବଳୀ
ବାଣୀ-ଆରାଧନେ ଧୂପକାଠପରି
ଯାଇଅଛି ଶେଷେ ଜଳି ।
ଜଳିଯିବ ତନୁ, ତା କୀର୍ତ୍ତି ଉଜ୍ଜ୍ୱଳ
ଥିବ ଦୀପ-ସ୍ତମ୍ଭ ପରି
ବାଣୀ-ବନମୃଗ ପାନ୍ଥେ କହୁଥିବ
ପଛେ ଅନା ଥରେ ଫେରି ।
ସାରସ୍ୱତଧନେ ଚିର ସଂଗଠକ
ଏକନିଷ୍ଠ ମହାରଥୀ
ଅନ୍ତିମ ବିଦାୟେ ହେ କବି ବନ୍ଧୁ
ସେନ ଭକତ - ପ୍ରଣତି ।

# ସ୍ନେହର ବିଚ୍ଛେଦ

## ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ

ଏଇତ ସେଦିନ ବିଚ୍ଛନ୍ଦର ଦେହ ଶତାବ୍ଦୀରେ ପରିଣତ ହୋଇଛି···ତାର ଉତ୍ତାପ ଏବେ ବି ଯାଇନାହିଁ ।

ମୁଁ ଆଶା କରୁଥିଲି, ବିଚ୍ଛନ୍ଦ ଆହୁରି ଅନେକ ଦିନ ବଞ୍ଚିବ । କିନ୍ତୁ ସେ ଏକପ୍ରକାର ଦଗା ଦେଇ ଆମକୁ ଚାଲିଗଲା । ମୁଁ ଯେତେବେଳେ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର ସଭାପତି ଥିଲି, ସେତେବେଳେ ବିଚ୍ଛନ୍ଦକୁ ସେଥିରେ ରଖିବାପାଇଁ ପ୍ରାଣପଣେ ଚେଷ୍ଟା କରିଥିଲି । ତା'ରି ଫଳରେ ସେ ସେଠାରେ ରହିପାରିଥିଲା । କିନ୍ତୁ ମୁଁ ଯେପରି, ସେ ମଧ୍ୟ ସେହିପରି । ଓଡ଼ିଶା ସାହିତ୍ୟ ଏକାଡେମୀରେ ରହି ମଧ୍ୟ କିଛି କାମ କରିବାର ସୁବିଧା ପାଇପାରିଲୁ ନାହିଁ ।

ମୁଁ ଭୁବନେଶ୍ୱରରେ ଥିଲାବେଳେ ବିଚ୍ଛନ୍ଦପାଖକୁ ଅଧିକାଂଶ ସମୟରେ ଯାଉଥିଲି, ସେ ମଧ୍ୟ ମୋପାଖକୁ କୌଣସି ସମୟରେ ଅସୁବିଧାରେ ପଡ଼ିଲେ ଆସୁଥିଲା ।

ବିଚ୍ଛନ୍ଦପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀରୁ ଏକ ହଜାର ଟଙ୍କା କରିଦେବାଲାଗି ମୁଁ ଚେଷ୍ଟା କରିଥିଲି । ମହତାବ ସେଥିରେ ରାଜି ହୋଇଥିଲେ । ତାଙ୍କୁ ମଧ୍ୟ ଏକ ହଜାର ଟଙ୍କା ଦିଆହୋଇଥିଲା; କିନ୍ତୁ ସେ ସେତେବେଳକୁ ରୋଗଗ୍ରସ୍ତ ।

ଇଂରାଜୀ-ସାହିତ୍ୟରେ ବିଚ୍ଛନ୍ଦର ଖୁବ୍ ପରିପକ୍ୱ ଜ୍ଞାନ ଥିଲା । ଛାତ୍ରାବସ୍ଥାରେ ବିଚ୍ଛନ୍ଦର ଇଂରାଜୀଜ୍ଞାନପାଇଁ ସେ ବନ୍ଧୁମାନଙ୍କର ଆଦରର ପାତ୍ର ହୋଇଥିଲା । ଇଂରାଜୀଭାଷାରେ ସେ ଉପେନ୍ଦ୍ରଭଞ୍ଜ ଓ କବିସୂର୍ଯ୍ୟ ଇତ୍ୟାଦିଙ୍କର କେତୋଟି ଲେଖା ଅନୁବାଦ କରିଛି । ତାହା ଅନୁପମ ।

ବିଚ୍ଛନ୍ଦ ଜଣେ ପରମଭକ୍ତ ଓ ତାର ବୈଷ୍ଣବ-ଧର୍ମପ୍ରତି ବିଶେଷ ଆଗ୍ରହ ଥିଲା ।

ପ୍ରାଚୀନ ଓଡ଼ିଆ ସାହିତ୍ୟପ୍ରତି ତାର ଆକର୍ଷଣ ଖୁବ୍ ବେଶୀ ଥିଲା । ଖାଲି ସେତିକ ନୁହେଁ, ବଙ୍ଗୀୟମାନେ ଓଡ଼ିଆ ଭାଷାକୁ ଯେପରି ଅନ୍ତର ଭିତରେ ସାଧାରଣତଃ ଦେଖନ୍ତି, ତାହାର ପ୍ରତିବାଦ ସେ ଦୃଢ଼ଭାବରେ ସବୁସ୍ଥାନରେ କରୁଥିଲା ।

ବର୍ତ୍ତମାନ ଡକ୍ଟର ହରେକୃଷ୍ଣ ମହତାବଙ୍କ ଯେଉଁ "ବିଷୁବମିଳନ" ହେଉଛି ଓ ବଙ୍ଗୀୟମାନଙ୍କର ଯେଉଁ "ପ୍ରଥମ ବୈଶାଖ" ହେଉଛି, ସେ ସେହିପରି "କଳିଙ୍ଗ-ଭାରତୀ" ଅନୁଷ୍ଠାନ ଏମାନଙ୍କ ଆଗରୁ ଗଠନ କରିଥିଲା । ଛାତ୍ରମାନଙ୍କର ସାହଚର୍ଯ୍ୟରେ ବିଶେଷତଃ ସୁଧୀ ଛାତ୍ରମାନଙ୍କୁ ନେଇ ସେ 'କଳିଙ୍ଗ-ଭାରତୀ' ସ୍ଥାପନ କରିଥିଲା ଏବଂ ଓଡ଼ିଆ ଭାଷାର ଟେକ ରଖିବାକୁ ସେ ସବୁବେଳେ ଉଦ୍ୟମ କରୁଥିଲା ।

ବିଚ୍ଛନ୍ଦର ବଂଶରେ ପାଠପଢ଼ା ଖୁବ୍ ଥିଲା । ତାହାର ଭାଇମାନେ ଖୁବ୍ ପାଠ ପଢ଼ିଥିଲେ ଏବଂ ଭାବୁକ ଥିଲେ । ବିଶେଷତଃ ଏଠାରେ ତାଙ୍କର ବଡ଼ଭାଇ ପଦ୍ମଚରଣ ପଟ୍ଟନାୟକଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ପୁଣି ବିଚ୍ଛନ୍ଦର ବଂଶରେ କେହି କେହି ଭଲ କବି ଥିଲେ ।

ବିଚ୍ଛନ୍ଦ ନିଜେ ସାହିତ୍ୟ ଛଡ଼ା ସଙ୍ଗୀତପ୍ରେମୀ ମଧ୍ୟ ଥିଲା । ସେ ସଙ୍ଗୀତ କିନ୍ତୁ ଦରବାରୀ ସଙ୍ଗୀତ ନୁହେଁ, କି ଓସ୍ତାଦି ସଙ୍ଗୀତ ନୁହେଁ । ସେ ସଙ୍ଗୀତ ଓଡ଼ିଶାର ଛାନ୍ଦ, ଚଉପଦୀ, ଚମ୍ପୂ ଇତ୍ୟାଦି । ସେଥିରେ ବିଚ୍ଛନ୍ଦର ପ୍ରଗାଢ଼ ଅନୁରାଗ ଥିଲା । ସେଥିପାଇଁ ସେ ଗୋଟିପୋ-ପିଲା ନେଇ, ଗୀତଗୁଆଇ, ନାଚ ନଚାଇ, ସେ ଆଉ ଦଶଜଣଙ୍କୁ ଦେଖାଇବାରେ ଅତ୍ୟନ୍ତ ଆଗ୍ରହୀ ଥିଲା ।

ମୋର ନିଜର କଥା କହିବି––ମୁଁ 'ଉତ୍କଳ-ସାହିତ୍ୟ-ସମାଜ'ର ସମ୍ପାଦକ ଥିଲାବେଳେ ବିଚ୍ଛନ୍ଦ

ସହକାରୀ ସମ୍ପାଦକ ଥିଲି । ଉତ୍କଳ-ସାହିତ୍ୟ ସମାଜର ଗୋଟିଏ ସଙ୍ଗୀତ ଶାଖା ଅଛି । ମୁଁ ପିଲାଦିନୁ ମା'ପାଖରୁ ମାଡ଼ ଖାଇ ସଙ୍ଗୀତବିରୋଧୀ ଥିଲି । ସେଥିପାଇଁ ମୁଁ କେବେହେଲେ ଯାତ୍ରା, ଥିଏଟର, ନାଚଗୀତରେ ଯୋଗ ଦେଉ ନ ଥିଲି । ତେଣୁ ଉତ୍କଳ-ସାହିତ୍ୟ-ସମାଜର ସଙ୍ଗୀତଶାଖାରେ ବିଚ୍ଛନ୍ଦ ଯେତେବେଳେ ଗୋଟିପୋ-ପିଲାଙ୍କୁ ନେଇ ନାଚଗୀତ କରାଉଥିଲା, ମୁଁ ରହୁ ନ ଥିଲି । ଦିନେ ସେ ମୋତେ ଅତ୍ୟନ୍ତ ଅନୁରୋଧ କଲା, ଓଡ଼ିଆ ଗୀତ ଶୁଣିବାପାଇଁ । ତାଙ୍କର ଗୋଟିଏ ପିଲା ସୁକଣ୍ଠରେ ଯେତେବେଳେ "ସଖୀ କାହିଁ ରଖିବ ନେଇଛି" ଗାଇଲା, ଓ ନାନାପ୍ରକାରର ଭଙ୍ଗୀଦ୍ୱାରା ଭାବପ୍ରକାଶ କଲା, ସେଥିରେ ମୁଁ ଏକାବେଳକେ ମୁଗ୍ଧ, ବିଚଳିତ ଓ ଆକୃଷ୍ଟ ହେଲି ! ସେହିଦିନଠାରୁ ମୋ ଜୀବନରେ ଗୋଟିଏ ଗଭୀର ପ୍ରେରଣ ହେଲା,—ମୁଁ ସଙ୍ଗୀତପ୍ରତି ଆକୃଷ୍ଟ ହେଲି, କେବଳ ଓଡ଼ିଆ ସଙ୍ଗୀତପ୍ରତି ଏବଂ ବଳରାମର କଣ୍ଠରୁ ଯାହା ବାହାରୁଥିଲା । ବଳରାମକୁ ନେଇ ମୁଁ ଅନେକଥର ଇଆଡ଼େ ସିଆଡ଼େ ଯାଉଥିଲି । ବାବାଜୀ ବୈଷ୍ଣବଚରଣ ଦାସଙ୍କର ବଳରାମ ନାଟୁଆ-ପିଲା ଥିଲା । ଅନେକ ସମୟରେ ବଳରାମ ବାବାଜୀଙ୍କ-ଠାରୁ ମାଡ଼ଗାଳି ଖାଇଲେ, ମୋର ପାଖକୁ ପଳାଇ-ଆସେ । ମୁଁ ତାକୁ ଅନେକ ବୁଝାଏ । ଶେଷରେ ଆଜି ବାବାଜୀ ବୈଷ୍ଣବଚରଣ ନାହାନ୍ତି, କି ବିଚ୍ଛନ୍ଦ ନାହିଁ ଏବଂ ବଳରାମ ବି ନାଚଗୀତ ଛାଡ଼ିଦେଲାଣି । କିନ୍ତୁ ସେହି ମୂର୍ତ୍ତିଟି ମୋର ରହିଅଛି; ଏହା ପରେ ପରେ ଲକ୍ଷ୍ମୀକାନ୍ତ ଚୌଧୁରୀ ଯେତେବେଳେ ଉତ୍କଳ-ସଙ୍ଗୀତ-ସମାଜ ଆରମ୍ଭ କଲା, ସେତେବେଳେ ବ୍ରଜସୁନ୍ଦର ଦାସ, କମଳାବସୁ ଚୌଧୁରୀ, ମୁଧୁପୁରର ପଣ୍ଡିତପୁତ ଇତ୍ୟାଦିଙ୍କୁ ନେଇ ତାହା ଗଢ଼ାଗଲା । ମୋତେ ସେଥିରେ ସଭାପତି କରିବାପାଇଁ ବ୍ରଜସୁନ୍ଦର ଜୋର କଲେ । ମୁଁ କହିଲି, ନା, ମୁଁ ହେବ ନାହିଁ ଏବଂ ବ୍ରଜସୁନ୍ଦରଙ୍କୁ କହିଲି—ଆପଣ ଅନ୍ତତଃ ତବଲା ବଜେଇ ଜାଣନ୍ତି, ଆପଣ ସଭାପତି ହୁଅନ୍ତୁ । କିନ୍ତୁ ମୋତେ କେହି ଛାଡ଼ିଲେ ନାହିଁ । ସେଥିପାଇଁ ମୁଁ 'ଉତ୍କଳ-ସଙ୍ଗୀତ ସମାଜର କର୍ତ୍ତା ହେଲି ଏବଂ ଗୃହଆଙ୍ଗଣ ସଙ୍ଗୀତ ସମ୍ମିଳନୀ କରାଇଲି । ଏସବୁ ମୂଳରେ ବିଚ୍ଛନ୍ଦର ଚିନ୍ତା ଏବଂ ସ୍ୱଇଚ୍ଛା ଯେ କାର୍ଯ୍ୟ କରୁଥିଲା, ଏଥିରେ ସନ୍ଦେହ ନାହିଁ ।

ବିଚ୍ଛନ୍ଦର ଇଚ୍ଛା ଥିଲା—ଓଡ଼ିଆ ପ୍ରାଚୀନ ସାହିତ୍ୟର ମୌଳିକତା ରକ୍ଷା କରିବା ଏବଂ ସେ ସବୁବେଳେ କହୁଥିଲା—"ନୂତନ ଭାବକୁ ମଧ୍ୟ ସେଇ ଓଡ଼ିଆ ଛାନ୍ଦ, ଚମ୍ପୂ ଇତ୍ୟାଦିରେ ପ୍ରକାଶ କରିବାକୁ ହେବ । ତା' ନ ହେଲେ ଓଡ଼ିଆପ୍ରାଣର ତନ୍ତ୍ରୀ ବାଜିବ ନାହିଁ ।" ତାର ଏକଥା ମୋ ବିଚାରରେ ଗମ୍ଭୀର ସତ୍ୟ । ମୁଷ୍ଟିମେୟ ବିଦ୍ୱାନମଣ୍ଡଳୀକୁ ଗ୍ରନ୍ଥିହୀନ ଅଥବା ମୁକ୍ତଛନ୍ଦ ଆନନ୍ଦ ଦେଇପାରେ, କିନ୍ତୁ ତାହା ମୁଖସ୍ଥ ହେବାର ସୁବିଧା ନ ଥିବାରୁ ଓଡ଼ିଆପ୍ରାଣରେ ତାହା ସଞ୍ଚରିତ ହୋଇପାରିବ ନାହିଁ ।

ବିଚ୍ଛନ୍ଦ ବଡ଼ ଦୈନ୍ୟାବସ୍ଥାରେ ପ୍ରାଣତ୍ୟାଗ କଲା । ଆମ୍ଭମାନଙ୍କର ଉଚିତ ବର୍ତ୍ତମାନ ସୁଦ୍ଧା ତାର ପିଲାପିଲି-ମାନଙ୍କୁ ସାହାଯ୍ୟ କରିବା ।

ଏହାଛଡ଼ା ବିଚ୍ଛନ୍ଦ ଇଂରାଜୀରେ ନିଜ ଭାଷାରେ ଯେଉଁ ଇଂରାଜୀ କବିତା ଇତ୍ୟାଦି ଲେଖିଯାଇଅଛି ଏବଂ ଯାହା ପ୍ରକାଶିତ ହୋଇପାରିନାହିଁ, ତାକୁ ପ୍ରକାଶ କରିବା ।

ଓଡ଼ିଆ ଜାତୀୟତାପାଇଁ ପ୍ରାଣ ଦେଇଦେବ—ଏହି ଭଳିଆ ଲୋକ ବିଚ୍ଛନ୍ଦ ଥିଲା । ଏହି କଟକ ସହରରେ 'ଉତ୍କଳ-ସାହିତ୍ୟ-ସମାଜରେ' କୌଣସି ଉପଲକ୍ଷରେ ଯଦି ଓଡ଼ିଆ ଭାଷା ଓ ଜାତିପ୍ରତି ଅଗ୍ରାଧିକାର ଦିଆଯାଉ ନ ଥିଲା, ତାହାହେଲେ ସେ ହଠାତ୍ ଉତ୍କ୍ଷିପ୍ତ ହୋଇପଡ଼ୁଥିଲା ଏବଂ ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧିପାଇଁ ସତତ ଚିନ୍ତା କରୁଥିଲା ।

ବିଚ୍ଛନ୍ଦର ଜୀବନୀ ସାହିତ୍ୟିକ-ଜୀବନୀ—ତାହା ଆଲୋଚନା କରିବାରେ ଆନନ୍ଦ ଅଛି ।

ଦୁର୍ଗତ, ନିଃସଙ୍ଗ, ନିଃଶଙ୍କେ ନିଜର ସ୍ୱଳକ,—
ଯେମନ ନିଷ୍କାମ ଏକ ନିରଳସ ବନ୍ଧାଣୀ-ବାଳକ—
ଅକଳ୍ପନୀୟ ପ୍ରତିଭା-ଭଣ୍ଡାର,
ଆବେଗପ୍ରବଣ ମାରଭମାନ ନବୀନ ବୟସର ଶାଶ୍ୱତ ପ୍ରତିଚ୍ଛାୟା !
ଅକପଟ ହସ ତା ମୁଖର ଏକ ଅବିଚ୍ଛେଦ୍ୟ ରେଖା,
"ସତ୍ୟବାଦୀ"ର ପ୍ରଜାପତି ପଖା,
ଦୈହିକ ଅକ୍ଷମତା, ଉତ୍କଟ ଅନଟନ କରି ମୁକାବିଲା
ସ୍ଥିତ ନଦୀସ୍ରୋତେ କାଠଖଣ୍ଡ ସମ ଭାସିଗଲ—
ମେଘଦୂତ ବଦାର୍ଣ୍ଣ କରି ଆର୍ଯ୍ୟାବର୍ତ୍ତାକାଶେ ଉଠିଲା ଝଡ଼ !
ତଥାପି ନ କରି ଟିକେ ଭ୍ରୂକ୍ଷେପ,
"ପ୍ରାଚୀ"ଭାଲେ ଦେଇ ଗୌରବ-ଟୀକା
ଉଡ଼ାଇଲ "ଉତ୍କଳ ସାହିତ୍ୟ" ପ୍ରାଙ୍ଗଣେ ବିଜୟ ବୈଜୟନ୍ତୀ—
ସୁଧୀସମାଜ ହେଲେ ଉଲ୍ଲାସେ ଉତ୍‌ଫୁଲ୍ଲିତ !
"ଭାଷାକୋଷେ" ରକ୍ତାକ୍ତ ସ୍ୱାକ୍ଷର, ଅକ୍ଳାନ୍ତ ଲେଖନୀର ନିପୁଣତା
ପରଶ ଜାତୀୟତାର ସମୁଜ୍ଜ୍ୱଳ ପ୍ରଦୀପ
"କଳିଙ୍ଗଭାରତୀ", "ଉତ୍କଳ-ଯୁବ-ସାହିତ୍ୟ-ସମାଜ" ତଳେ
ସାଂସ୍କୃତିକ "ଭଞ୍ଜ-ଜୟନ୍ତୀ" ମଣ୍ଡପେ ପ୍ରବନ୍ଧ ସଗଠିତ—
ଦେଲା ଅମୀୟ ଭାଷା କୌଳିକ ପ୍ରଥା ଓ ପ୍ରାଣରେ,
ଏକ ପାରମ୍ପରିକ-ଆଲଙ୍କାରିକ ମେରୁପରି ଠିଆହୋଇ
ପ୍ରାଚୀନ କାବ୍ୟ-ଉପାସୀ ମୂର୍ଦ୍ଧାନ୍ୟର ବର୍ଣ୍ଣମାଳା ମନ୍ଦିରେ ।

●

ନିରବଚ୍ଛିନ୍ନ ଉଦାତ୍ତ କାମନା,
ନିରନ୍ତର ମୌଳିକ ପୁଷ୍ପବୃଷ୍ଟି "ଜଡତା-କୁମୁଦ",
ଅପ୍ରତିହତ କର୍ତ୍ତବ୍ୟବୋଧ,—
ନୈଷ୍ଠିକ ଅନ୍ତରର, ଆନ୍ତରିକର ନିରନ୍ତର ଆବାସ—
ନିଷ୍ପାପ ଶିଶୁ ଯେପରି ହୁଏ ସତତ ଅତୃପ୍ତ !
ବର୍ତ୍ତନା ଅବତଳି ସତ୍ୟ ଅକଳନ,
ଏକ ସାବଲୀଳ ସ୍ୱପ୍ନ ଯେପରି—
ଜାତୀୟ ଆରମ୍ଭ-ବୈଭବର ସୁବର୍ଣ୍ଣଯୁଗରେ
ରଖିଲ ଅଳଙ୍କ ସ୍ୱନର ବନ୍ଧୁ-ବାଣୀ-ଦରବାରେ ।
ବରେଣ୍ୟ, ସୁଦକ୍ଷ, ନନ୍ଦିତ, ସୁଲେଖା, ସତର୍କ ପୁରୁଷ !



# ଭଞ୍ଜଭକ୍ତ ବିଚ୍ଛନ୍ଦ

ଅଧ୍ୟାପକ **ଡକ୍ଟର କୁଞ୍ଜବିହାରୀ ଦାଶ**

କବି ହେବାର ଦାୟିତ୍ୱ କବିଙ୍କର; କିନ୍ତୁ ତାଙ୍କୁ କବିଆସରରେ ପ୍ରତିଷ୍ଠିତ କରିବାର ଦାୟିତ୍ୱ ତାଙ୍କ କବିତାର ଦରଦୀ ପାଠକର । ଓଡ଼ିଶାରେ କବି ହୋଇଛନ୍ତି, କେତେକ ବଡ଼ କବି ହୋଇ ଉଠୁଛନ୍ତି କାଳର କଷଟିରେ ପରୀକ୍ଷିତ ହୋଇ; କାବ୍ୟର ନିଜସ୍ୱ ଗୁଣରେ ଯାହା ବା ଯେତେ ହେବାର ହୋଇଛି; ପାଠକ ତାର ଦାୟିତ୍ୱ ତୁଲାଇ ନାହିଁ । ତେଣୁ କବିର ମହିମା ଓଡ଼ିଶାର ସୀମା ଡେଇଁ ଯାଇପାରିନାହିଁ । ସେ ସ୍ଥାନୀୟ ପ୍ରତିଷ୍ଠା ପାଇଛି ମାତ୍ର । ଏହା ତା କାବ୍ୟରେ ଆନ୍ତର୍ଜାତୀୟ ଭାବଧାରାର ଅଭାବରୁ ନୁହେଁ; ଗ୍ରାହକ, ରସିକ ବା ବିଦଗ୍ଧ ପାଠକର ସହଯୋଗ ଅଭାବରୁ । କବିର ପ୍ରତିଭାପୂଜା ନ କରିବା କିମ୍ବା କବିଙ୍କୁ ମହନୀୟ ସ୍ଥାନ ଦେବାର ଗୁରୁ ଦାୟିତ୍ୱ ନ ନେବାରେ ଜାତିର ଗୌଣତ୍ୱ ବଢ଼ିଛି, ଆତ୍ମବିଶ୍ୱାସ ଲୋପ ପାଇଛି; ଦେଖାଦେଇଛି ପରମୁଖାପେକ୍ଷିତା ।

ବିବ କବିତାର ଶ୍ରେଷ୍ଠ ପାଠକ । ବିଚ୍ଛନ୍ଦ ଜଣେ କବି । କବିତା ରଚନାର ଶ୍ରମ ସେ ବୁଝିଥିଲେ; ବୁଝିଥିଲେ ରସ-ସୃଷ୍ଟିର ମହତ୍ତ୍ୱ । ନିଜେ କବି ହେବାର ଉଚ୍ଚାକାଂକ୍ଷା ତାଙ୍କର ନ ଥିଲା, ନୁହେଁ; କିନ୍ତୁ ତାହା ସେ ବଳିଦେଲେ ଜଣେ ଶ୍ରେଷ୍ଠ କବିଙ୍କୁ ପ୍ରତିଷ୍ଠିତ କରିବାରେ । କବିଙ୍କୁ ଗୌରବ ଦେଇ ଦେଶକୁ ଗୌରବାନ୍ୱିତ କରିବାରେ ସେ ଏଯୁଗରେ ଜଣେ ସାହିତ୍ୟିକ ନେତା । ପରମୁଖାପେକ୍ଷିତାକୁ ସେ ଘୃଣା କରୁଥିଲେ । ପରମୁଖାପେକ୍ଷୀ ହେଉଥିବାରୁ ସେ ଆଧୁନିକ ଓଡ଼ିଆ ସାହିତ୍ୟପ୍ରତି ହୋଇଥିଲେ ଅସହିଷ୍ଣୁ । ତାଙ୍କର ବିଶ୍ୱାସ ଥିଲା, ଆଧୁନିକ ଓଡ଼ିଆ ସାହିତ୍ୟିକ ମନରୁ କିଛି ଲେଖୁନାହିଁ, ବିଦେଶୀ ବା ପଡ଼ୋଶୀ ସାହିତ୍ୟକୁ ଚୂହିଁ ଲେଖୁଛି । ମୌଳିକ ପ୍ରାଣପ୍ରାଚୁର୍ଯ୍ୟ ଏଥିରେ ନାହିଁ । ଭାବ ପରସ୍ୱ, ପରଘର ଗୁଞ୍ଜ— ପରଧର୍ମ ଭୟାବହ ।

ଆତ୍ମ-ଧର୍ମବିଶ୍ୱାସରେ ସେ ବଳିଷ୍ଠ । ବ୍ୟକ୍ତିଗତ ପାଠାଗାର ନାହିଁ, ଜୀବନରେ ସେ ଖଣ୍ଡିଏ ଭଲ ବହି ପଢ଼ିନ୍ତି ନାହିଁ, ଇଂରେଜୀମିଶା ଓଡ଼ିଆ କହନ୍ତି, ଧାଡ଼ିଏ ଲେଖନ୍ତି ନାହିଁ—ହାକିମ—ତାଙ୍କୁ ପୋଷା ମନେଇ ସେ ସାହିତ୍ୟ ପଢ଼େଇଥିଲେ, ହାତରେ ଧରେଇଥିଲେ କଲମ ସାହିତ୍ୟର ଦାରିଦ୍ର୍ୟ ଦୂର କରିବାଲାଗି । ଜାତି ବା ସାହିତ୍ୟପ୍ରେମ ତାଙ୍କର ଆନ୍ତରିକ, ନିବିଡ଼ ଥିଲା । ପରଧର୍ମଲିପ୍ସୁଙ୍କୁ ଆତ୍ମ-ଧର୍ମରେ ଦୀକ୍ଷିତ କରିବାରେ ତାହା ପ୍ରକାଶ ପାଇଥିଲା । ସାହିତ୍ୟକୁ, ସାହିତ୍ୟ-ମେଳାକୁ ତାଙ୍କପରି ଏତେ ଲୋକପ୍ରିୟ ଆଉ କେହି କରିପାରିନାହିଁ । ସାହିତ୍ୟ-ମେଳଣ ତାଙ୍କର କୀର୍ତ୍ତି । ଭଞ୍ଜ-ଜୟନ୍ତୀକୁ ନୃତ୍ୟଗୀତ ଓ ଅଭିନୟ ସମାରୋହରେ ସେ ସରସ, ଜୀବନ୍ତ କରିଥିଲେ । ଭଞ୍ଜ-ଜୟନ୍ତୀ ପରି କୌଣସି ଓଡ଼ିଆ ସାହିତ୍ୟ-ସମ୍ମେଳନରେ ଏତେ ବିପୁଳ ଜନସମାଗମ ହେବା କଥା ମୁଁ ଜାଣେ ନାହିଁ । ଆଧୁନିକ ଯୁଗରେ ଭଞ୍ଜଯୁଗର ପୁନରଭ୍ୟୁଦୟ ଘଟିଥିଲା ତାଙ୍କ ପ୍ରଚେଷ୍ଟାରେ । ସେ ନିଜେ ଲେଖୁଥିଲେ

ଭଞ୍ଜଶୈଳୀରେ, ତାଙ୍କ ଶେଷ ନିଶ୍ୱାସ ଯିବାପର୍ଯ୍ୟନ୍ତ ଭଞ୍ଜେ ହିଁ ତାଙ୍କ ସାହିତ୍ୟିକ ଦିଗ୍‌ବଳୟକୁ ଆଲୋକିତ କରି ରଖିଥିଲେ ।

ବିଚ୍ଛନ୍ଦ ଏତେ କଲେ ବି ଭଞ୍ଜେ ପ୍ରତିଷ୍ଠିତ ହୋଇପାରିଲେ ନାହିଁ । ତାଙ୍କ କାବ୍ୟର ସଠିକ ନିର୍ଭୁଲ ସଂସ୍କରଣ ହୋଇପାରିଲା ନାହିଁ, ପ୍ରକାଶିତ ହୋଇ-ପାରିଲା ନାହିଁ "ଉପେନ୍ଦ୍ର ଗ୍ରନ୍ଥାବଳୀ" । ହେଲା ନାହିଁ ତାଙ୍କ ସାହିତ୍ୟର କିଛି ହେଲେ ଗବେଷଣା । ତାଙ୍କ ଜୀବନ ଓ ସାହିତ୍ୟ ସଂପର୍କରେ ଇଂରେଜୀରେ ଲେଖା ହେଲା ନାହିଁ ଗ୍ରନ୍ଥ । ଯେଉଁ ପନ୍ଥାରେ ଭଞ୍ଜେ ସ୍ଥାୟୀ-ପ୍ରତିଷ୍ଠା ପାଇଥାନ୍ତେ, ତାହା ଅବଲମ୍ବିତ ହୋଇପାରିଲା ନାହିଁ । ଓଡ଼ିଆମାନେ ଭଞ୍ଜ-ପ୍ରତିଭା ଜାଣିଥିଲେ, ହୁଏତ ଆଜି ଟିକିଏ ଜାଣିଲେ, କିନ୍ତୁ ଭାରତ ବା ଜଗତର ଦୃଷ୍ଟି ଭଞ୍ଜ-ସାହିତ୍ୟପ୍ରତି ଆକୃଷ୍ଟ ହୋଇପାରିଲା ନାହିଁ; ବୋଧହୁଏ ଆମ ଦକ୍ଷତାର ଅଭାବରୁ, ଅର୍ଥାଭାବରୁ ନୁହେଁ ।

ବିଚ୍ଛନ୍ଦଙ୍କ ଏ ସଫଳତା ଜାତିର ଅନ୍ତର୍ଶକ୍ତିକୁ ଏକ ଆହ୍ୱାନ, ବିଦଗ୍ଧ କର୍ମୀର ପ୍ରେରଣା । ଭଞ୍ଜ ବିଶ୍ୱକବିରୂପେ ପ୍ରତିଷ୍ଠିତ ହେବାର ଦେଖିଲେ ବିଚ୍ଛନ୍ଦଙ୍କ ସ୍ୱର୍ଗତ ଆତ୍ମା ବରୂଶିବ—ତାଙ୍କ ନିଜର ଉପଯୁକ୍ତ ସ୍ମୃତି ରକ୍ଷାହେଲା । କାରଣ ଆଦର୍ଶକୁ ଜୀବନ୍ତ ରଖିବାଠୁ ବଡ଼ ସ୍ମୃତିରକ୍ଷା ଆଉ ହୋଇପାରେ ନାହିଁ ।



# ସୌର-ସାଧକ

ଶ୍ରୀ ବୈରାଗୀଚରଣ ଦାଶ

ହେ ଭାରତୀ-ବରପୁତ୍ର ଉତ୍କଳ-ଗୌରବ
ତୁମର ପ୍ରଭାବରେ ଆଜ ଲଭିଅଛୁ ଖ୍ୟାତି
କବିସମ୍ରାଟ୍‌ଙ୍କ କୃତ ସାହିତ୍ୟର ଗର୍ବ
ଅଖଣ୍ଡ କାବ୍ୟକବିତା-ସମ୍ପଦ ସମ୍ପ୍ରତି ।

ଗାଇଥିଲେ ଯେ ବିପଞ୍ଚୀ ଭଞ୍ଜ-ଜୟଦେବ
ରଚିଥିଲେ ‘ଯେଉଁ କଳା; ଅମର ଏ ପୁରେ
ମୂର୍ତ୍ତିମନ୍ତ ସାଧକ ହେ ଉଦ୍ଧରିଲ ସର୍ବ
ଚିରଲୁପ୍ତ ଥିଲ ଯେତୁ ତିମିର ଆକରେ ।

ହେ ମହତଚେତା ସାହିତ୍ୟର ଶିରୋମଣି
ଯେତେ ଦିନ ଥିବ ଏହି "କଳିଙ୍ଗ-ଭାରତୀ"
ତୁମର ଦୀପ୍ତ ସାଧନା ଘୋଷିବ ଅବିମା
ରହିଥିବ ତୁମ ଯଶ ଚାବତ ଏ କ୍ଷିତି ।

ଜାଳିଦେଇ ଗଲ ଯେଉଁ ସାହିତ୍ୟ-ପ୍ରଦୀପ
ଉତ୍କଳ-ଭୁବନେ ଦୃଢ଼ ସାଧନାର ବଳେ
ନମସ୍ୟ ହେ ଗୁଣାକର ଶ୍ରେଷ୍ଠ ପୁଣ୍ୟତପଃ
ସେ ମହାନ୍ କୀର୍ତ୍ତିଦୀପେ ବନ୍ଦିବେ ସକଳେ ।

ନଶ୍ୱର ଜୀବନେ ତୁମେ ବିରଚି ସାଧନା
ପ୍ରାଚୀନ ସାହିତ୍ୟପ୍ରଭା ମେଲିଲ ଆଲୋକେ
ହେ ଅବିନଶ୍ୱର ଆତ୍ମାଧାରୀ ମହାମନା
ଉତ୍କଳେ ଅମର ଥିବ ଯାବତ୍-ଚନ୍ଦ୍ରାର୍କେ ।



# ବିଚ୍ଛନ୍ଦଚରଣ ଓ ସବୁଜ-ସାହିତ୍ୟ ସମିତି

### ଶ୍ରୀ ଶରତ୍‌ଚନ୍ଦ୍ର ମୁଖାରଜି

( ୧ )

ଓଡ଼ିଆ ଜାତିର ବହୁ ଦୋଷତ୍ରୁଟି ଭିତରେ ପୂଜ୍ୟ-ପୂଜା ବ୍ୟତିକ୍ରମ ଗୋଟିଏ ବଡ଼ ତ୍ରୁଟି । ମୁଁ ଯେତେବେଳେ ଆମ ଜାତୀୟ ଜୀବନର ନାନା ଦୁର୍ଗତିର କଥା ଭାବେ, ମୋର ବାରମ୍ବାର ମନେ ପଡ଼ିଯାଏ କବି ଗଙ୍ଗାଧର ମେହେରଙ୍କ "ପ୍ରଣୟବଲ୍ଲରୀ" କାବ୍ୟର ସେହି ଅମର ପଂକ୍ତିଯୋଡ଼ିକ; ଯହିଁରେ ଦୁଷ୍ମନ୍ତ-ଧ୍ୟାନରତା ଶକୁନ୍ତଳାଙ୍କପ୍ରତି ମୁନି ଦୁର୍ବାସାଙ୍କର ଅଭିଶାପ ନିହିତ—

"ହେନ ପୂଜ୍ୟ-ପୂଜା- ବ୍ୟତିକ୍ରମଫଳ
ଯା'ଠାରେ ରଖିଛୁ ଲୟ
ସେ ତୋତେ ଚିହ୍ନିବ ନାହିଁ ତୁ ଦେଲେହେଁ
ଆପଣାର ପରିଚୟ ।"

ତେଣୁ ଶ୍ରୀମାନ୍ ମୁରାରିମୋହନ ଜେନା ଯେତେବେଳେ "ବିଚ୍ଛନ୍ଦସ୍ମରଣିକା" ପାଇଁ ମତେ କିଛି ଲେଖିବାକୁ କହିଲେ, ସେତେବେଳେ ମୁଁ ସାଗ୍ରହରେ ସମ୍ମତି ଦେଲି ପୂଜ୍ୟ-ପୂଜାର ପୁଣ୍ୟରେ ଭାଗୀ ହେବି ଏଇ ଆଶାରେ । ଉତ୍କଳର ମୁଷ୍ଟିମେୟ ନିଷ୍ଠାପର ସାହିତ୍ୟସେବୀଙ୍କ ମଧ୍ୟରେ ବିଚ୍ଛନ୍ଦଚରଣ ଅନ୍ୟତମ ଥିଲେ । ବିଚ୍ଛନ୍ଦଚରଣ ଓ ମୁଁ ସାହିତ୍ୟକ୍ଷେତ୍ରରେ ସମଧର୍ମା ହେଲେ କଣ ହେବ, ଆମେ ଦୁହେଁ ଥିଲୁ ବିପରୀତ ପନ୍ଥୀ । ସେ ପ୍ରାଚୀନ-ସାହିତ୍ୟର ପୂଜାରୀ ଥିଲେ; ମୁଁ ଥିଲି ନବ୍ୟ ସାହିତ୍ୟର ଆବାହକମାନଙ୍କ ମଧ୍ୟରୁ ଜଣେ । ତଥାପି ଆମ ଦୁହିଁଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟର ଅଭାବ କଦାପି ହୋଇନାହିଁ । ପ୍ରାଚୀନ ସାହିତ୍ୟର ପ୍ରଚାର ଓ ମୂଲ୍ୟାଙ୍କନପାଇଁ ସେ ପ୍ରଗାଢ଼ ନିଷ୍ଠା ଓ ପରିଶ୍ରମଦ୍ୱାରା ନିଜ ଜୀବନକୁ ସାର୍ଥକ କରି ଯାଇଅଛନ୍ତି । ମାତ୍ର ନବ୍ୟ ସାହିତ୍ୟ ସମ୍ବନ୍ଧରେ ମୁଁ ସେପରି କିଛି କରିପାରିନାହିଁ; ଯାହାକୁ ତାଙ୍କର କୀର୍ତ୍ତିସ୍ତମ୍ଭ ସହିତ ତୁଳନା କରାଯାଇପାରେ । ତାଛଡ଼ା ସାହିତ୍ୟିକ ଜୀବନର ଆରମ୍ଭରେ ମୁଁ ସ୍ଥିର କରିଥିଲି ଯେ ନିଜେ କେବଳ ଲେଖାଲେଖି କରିବା ଅପେକ୍ଷା ନବ୍ୟ ସାହିତ୍ୟର ଉପାସକମାନଙ୍କୁ ସଂଘବଦ୍ଧ କରିବି ଓ ସେମାନଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ସର୍ବତୋଭାବେ ଚେଷ୍ଟା କରିବାରେ ନିଜର ସମୟ ଦାନ କରିବି । ତାହା ସଫଳ ହୋଇନାହିଁ । ବିଚ୍ଛନ୍ଦଚରଣଙ୍କର ମଧ୍ୟ ସେମିତି ପଣ ଥିଲା ଯେ ନିଜେ ମୌଳିକ ସାହିତ୍ୟ ସୃଷ୍ଟି କରିବା ଅପେକ୍ଷା ତାଙ୍କର ଅତି ପ୍ରିୟ ପ୍ରାଚୀନ ସାହିତ୍ୟକୁ ଲୋକଚକ୍ଷୁରେ ପ୍ରିୟତର କରିବେ—ତାଙ୍କର ସେ ସାଧନା ସଫଳ ହୋଇଅଛି । ମୁଁ ଥିଲି ସବୁଜ-ସାହିତ୍ୟ ସମିତିର ପରିଚାଳକ । ସବୁଜ-ସାହିତ୍ୟର ଯୌବନ-ଜଳତରଙ୍ଗକୁ ରୋଧିବାପାଇଁ ପରେ ସେ ଯେଉଁ ପ୍ରାଚୀ ସମିତି ଗଢ଼ିଲେ, ସେଥିରେ ସେ ମଧ୍ୟ ଥିଲେ ମୋଭଳି ପରିଚାଳକ । ଯୌବନ ଯେମିତି ସରିଯାଏ, ସେମିତି ମଧ୍ୟ ସରିଯାଏ ଯୌବନରେ ଅନୁସୃତ କାର୍ଯ୍ୟପ୍ରଣାଳୀ । ଏ ଅଭାଗା ଦେଶରେ ବଂଶଧରମାନେ, ଦାୟାଦମାନେ କାହାର ଅନୁସୃତ କାର୍ଯ୍ୟକୁ ବଞ୍ଚାଇ ରଖିବାକୁ ତତ୍ପର ନୁହନ୍ତି । ମୋର ଅତି ପ୍ରିୟ ସବୁଜ ସାହିତ୍ୟ-ସମିତି କାଳଗର୍ଭରେ—ବିଚ୍ଛନ୍ଦଙ୍କର ଅତିପ୍ରିୟ ପ୍ରାଚୀ ସମିତି ମଧ୍ୟ କାଳଗର୍ଭରେ । ପରେ ସେ ଯେଉଁ କଳିଙ୍ଗ-ଭାରତୀ ପ୍ରତିଷ୍ଠା କରିଥିଲେ, ତାହା ମଧ୍ୟ ମୁମୂର୍ଷୁ ବୋଲି ମନେ ହେଉଅଛି । ତେଣୁ ଆଜି ଆମ ଦୁହିଙ୍କର ସମ୍ପର୍କ ସ୍ମରଣିକାର ବିଷୟବସ୍ତୁ । ସେହି ସମ୍ପର୍କ କଥା

ଲିପିବଦ୍ଧ କରି ମୁଁ ବଞ୍ଛାନିଧିଚରଣଙ୍କପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରେ । ବନ୍ଧୁ ଅନ୍ନଦାଶଙ୍କରଙ୍କ କବିଭାଷାରେ ସ୍ୱର୍ଗୀୟ ଆତ୍ମାକୁ କହେ—

"ଆମେରି ଦୁହିଁଜନେ ଭିନ୍ନ
ବନେରି ପାଖୀ ।
ତୋମାଚେ ଆମାଚେ ମିଲ୍
ନାଇ ମିଲ୍ ନାଇ—
ତାଇ ବାନ୍ଧଲାମ୍ ରାଖୀ ।"

( ୨ )

ପ୍ରାୟ ବୃତିଶ ବର୍ଷ ଆଗର କଥା—କଟକର ରେଭେନ୍‌ସା କଲେଜ ଯେଉଁ ୧୯୨୧ ସାଲରେ କଲେଜ ଲେନ୍‌ରୁ ଚଣ୍ଡୀପଡ଼ଆରେ ନିଜର ନବ-ନିର୍ମିତ ଗୃହକୁ ସ୍ଥାନାନ୍ତରିତ ହେଲା—ସେହି ସମୟର କଥା । ମେଟ୍ରିକୁଲେଶନ ପାଶ୍ କରି ଆଇ.ଏ., ଆଇ. ଏସ୍‌ସି. ପଢ଼ିବାପାଇଁ ସେଠାରେ ଯୁଟିଲୁ ଆମେ ନବୀନ ସାହିତ୍ୟର ପୂଜାରୀ ସମଧର୍ମୀ ବନ୍ଧୁ କେତୋଟି । କିଶୋର ଅନ୍ନଦାଶଙ୍କର ରାୟ, କାଳିନ୍ଦୀଚରଣ ପାଣିଗ୍ରାହି, ବୈକୁଣ୍ଠନାଥ ପଟ୍ଟନାୟକ, ହରିଶ୍ଚନ୍ଦ୍ର ବଡ଼ାଳ, ହରିହର ମହାପାତ୍ର, ଢଣ୍ଡିହର ମିଶ୍ର ଓ ମୁଁ । ସବୁଜ-ସ୍ୱପ୍ନ ସେତେବେଳକୁ ମନରେ ଖାଲି ବସା ବାନ୍ଧୁଥାଏ; ମାତ୍ର ସବୁଜ-ସାହିତ୍ୟ ମୂର୍ତ୍ତି ପରିଗ୍ରହ କରି ନ ଥାଏ । ଏମାନଙ୍କ ମଧ୍ୟରୁ କେତେ ଜଣ ମିଶି ଆମେ ଗଢ଼ିଲୁ "ନନ୍‌ସେନ୍‌ସ କ୍ଲବ୍" । ମନ ଦେଇ ପାଠ ପଢ଼ିବା ମଧ୍ୟରେ ଅବସର ସମୟରେ ସାହିତ୍ୟ-ଚର୍ଚ୍ଚା କରୁ—ଫଳରେ ଗୋଟାଏ ହାତଲେଖା ସାମୟିକ ପତ୍ର "ସାଧନ"ର ଆବିର୍ଭାବ ହେଲା ଏବଂ ଅନ୍ୟାନ୍ୟ ସାମୟିକ ପତ୍ରମାନଙ୍କରେ ମଧ୍ୟ ଆମ୍ଭମାନଙ୍କର କିଛି କିଛି ଲେଖା ପ୍ରକାଶିତ ହେବାକୁ ଲାଗିଲା । ଏହାର କିଛି ଦିନପରେ ଆମ୍ଭେମାନେ ସାଗ୍ରହରେ ଲକ୍ଷ୍ୟ କଲୁ ଯେ ଆମ କଲେଜର ସହାଧ୍ୟାୟୀ ଓ ହଷ୍ଟେଲର ଅନ୍ତେବାସୀ ଗୋଟିଏ ଖର୍ବକାୟ କିଶୋର ଘନ ଘନ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଘରକୁ ଯାତାୟାତ ଆରମ୍ଭ କଲେ । ଓଡ଼ିଆ କିଶୋରଙ୍କ ମଧ୍ୟରେ ନବୀନ ସାହିତ୍ୟପ୍ରତି ସମାଦର ବୃଦ୍ଧି ଏହାର କାରଣ ଥିଲା କି ନା, କହିପାରିବି ନାହିଁ; ମାତ୍ର ପ୍ରାଚୀନ ସାହିତ୍ୟର ତତ୍‌କାଳୀନ ମହାରଥୀ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କର ଏହି ଖର୍ବକାୟ କିଶୋର ସହିତ ଗଣ୍ଠିବନ୍ଧନ ଆମ୍ଭମାନଙ୍କ କୌତୂହଳ ଉଦ୍ରେକ କଲାରୁ, ଆମ୍ଭେମାନେ ଖବର ନେଇ ଜାଣିଲୁ ଯେ ଏହି ଖର୍ବକାୟ କିଶୋର ବଞ୍ଛାନିଧିଚରଣ ପଟ୍ଟନାୟକ; ଯେ କି ନବୀନ-ସାହିତ୍ୟର ପିଚ୍ଛିଳ ପଥରେ ଆମ୍ଭମାନଙ୍କର ଅଭ୍ୟୁଦୟ ଦେଖି ଆତଙ୍କିତ ହୋଇଅଛନ୍ତି । ଆହୁରି ମଧ୍ୟ ଆମ୍ଭେମାନେ ଖବର ପାଇଥିଲୁ ଯେ ଗୁରୁ-ଶିଷ୍ୟ ଦୁହିଁଙ୍କୁ ଦୁହେଁ ପ୍ରାଚୀନ ସାହିତ୍ୟର ଜୟଯାତ୍ରାପାଇଁ ପ୍ରାଚୀନ ପୋଥି, ପୁରାଣ, ଚଉତିଶା ଇତ୍ୟାଦି ଘାଣ୍ଟି ଅସ୍ତ୍ର-ଶସ୍ତ୍ର ସଂଗ୍ରହ କରୁଅଛନ୍ତି । ସତକୁ ସତ ଆମ୍ଭେମାନେ ସବୁଜ-ପନ୍ଥୀ ସାନ ଦଳଟି କଦାପି ପ୍ରାଚୀନ ଓଡ଼ିଆ ସାହିତ୍ୟର ବିରୋଧୀ ନ ଥିଲୁ କିମ୍ବା ଅଜ୍ଞାତରେ "ବିଜୁଳି" "ଇନ୍ଦ୍ରଧନୁ"ଭଳି ପ୍ରାଚୀନ ସାହିତ୍ୟ ବଡ଼ କି ନବୀନ ସାହିତ୍ୟ ବଡ଼ କିମ୍ବା ଉପେନ୍ଦ୍ର ଭଞ୍ଜ ବଡ଼ କବି ବା ରାଧାନାଥ ବଡ଼ କବି—ଏଭଳି ଆଲୋଚନାରେ ଆମ୍ଭ-ମାନଙ୍କ ମଧ୍ୟରୁ କେହି କଦାପି ଯୋଗ ଦେଇ ନ ଥିଲେ । ଓଡ଼ିଆ ପ୍ରାଚୀନ ସାହିତ୍ୟପ୍ରତି ଆମ୍ଭମାନଙ୍କର ଗଭୀର ଶ୍ରଦ୍ଧା ଥିଲା, ମାତ୍ର ଆମ୍ଭେମାନେ ମନେ କରୁଥିଲୁ ଯେ କୌଣସି ମଧ୍ୟଯୁଗୀୟ କବିଙ୍କୁ—ସେ ଯେତେ ବଡ଼ ହୁଅନ୍ତୁ ନା କାହିଁକି ଏବଂ ତାଙ୍କର କାବ୍ୟ ଯେତେ ମଧୁର ହେଉ ନା କାହିଁକି—ଓଡ଼ିଶାର ଶେଷ କବି ବୋଲି ଧରିନେଇବସିଲେ ଏବଂ ନବ୍ୟ ରୀତିରେ ସାହିତ୍ୟ ସୃଷ୍ଟି ନ କଲେ ଏ ଜାତିର ଉନ୍ନତିରେ ବାଧା ଉପୁଜିବ । ତେଣୁ ନବ୍ୟସାହିତ୍ୟର ସୃଷ୍ଟି ଆମ୍ଭମାନଙ୍କର ଲକ୍ଷ୍ୟ ଥିଲା । ଏ ବାଟ ଛାଡ଼ି ପୁଣି ଥରେ ହୁଏତ ପ୍ରଣୟ-ମୂଳକ ଛାନ୍ଦ ବା ଚଉତିଶା ଲେଖିଥିଲେ ସ୍ୱୟଂ ବଞ୍ଛାନିଧି-ଚରଣ ଆମ୍ଭମାନଙ୍କ ଦଳଭୁକ୍ତ ହୋଇଥାନ୍ତେ; ମାତ୍ର ଆମ୍ଭେମାନେ ତାହା କରି ନ ଥିଲୁ । ତେଣୁ ବଞ୍ଛାନିଧିଚରଣ

ଆମ୍ଭମାନଙ୍କୁ ପ୍ରାଚୀନ - ସାହିତ୍ୟବିରୋଧୀ ବୋଲି ଧରିନେଲେ . ଏବଂ ପ୍ରଥମ ଶରନିକ୍ଷେପ କଲେ ତାଙ୍କର ବ୍ୟଙ୍ଗ-କବିତା "ସବୁଜପତ୍ରୀ"ଦ୍ୱାରା । ସତ କହିବାକୁ ଗଲେ, ସେତେବେଳଯାଏ "ସବୁଜ" ଶବ୍ଦ ଆମ୍ଭମାନଙ୍କ ମୁଣ୍ଡରେ ମଧ୍ୟ ବସା ବାନ୍ଧି ନ ଥାଏ । ଶାଗୁଆ, ସବୁଜା, ସାବୁଜା—ସବୁକୁ ଛାଡ଼ି "ସବୁଜ"ଶବ୍ଦ ଯେ ଆମ୍ଭେମାନେ ପରେ ଗ୍ରହଣ କଲୁ, ହୁଏତ ତାହାର ମୂଳରେ ଥିଲା ବିଚ୍ଛନ୍ଦଚରଣଙ୍କର ଏହି "ସବୁଜପତ୍ରୀ" ବ୍ୟଙ୍ଗ-କବିତା ଓ ତାଙ୍କଦ୍ୱାରା ଆମ୍ଭମାନଙ୍କର ନାମକରଣ "ସବୁଜଦଳ" । ସବୁଜ-ସାହିତ୍ୟ ସମିତି ବିଷୟକ ଆଲୋଚନାରେ କେହି କେହି ଲେଖିଥିବାର ଦେଖିଛି ଯେ, ଆମ୍ଭେମାନେ ବଙ୍ଗଦେଶରେ ପ୍ରମଥ ଚୌଧୁରୀଙ୍କ ପ୍ରତିଷ୍ଠିତ "ସବୁଜ ପତ୍ରରୁ" ଅଥବା ରବୀନ୍ଦ୍ରନାଥଙ୍କ ବିଖ୍ୟାତ କବିତା—

"ଓରେ ନବୀନ, ଓରେ ଆମାର୍ କାଁଚ୍,
ଓରେ ସବୁଜ, ଓରେ ଅବୁଝ
ଆଧମରା ଦେର ଘା ମେରେ ତୁଇ ବାଁଚ୍"—

ପଢ଼ି "ସବୁଜ" ନାମ ଗ୍ରହଣ କରିଥିଲୁ । ଏହା ସତ୍ୟ ନୁହେ । ଅବଶ୍ୟ କବି ରବୀନ୍ଦ୍ରନାଥଙ୍କ ରବିରଶ୍ମି ସେତେବେଳେ ମଧ୍ୟ-ଗଗନରେ ଥାଇ ସମଗ୍ର ଭାରତର ରସଗ୍ରାହି ଜ୍ଞାନପିପାସୁ ସମାଜକୁ ନିଜ ଆଡ଼କୁ ଆକର୍ଷଣ କରୁଥାଏ । ସେ ଆକର୍ଷଣରୁ ଗାନ୍ଧୀ ଓ ଜବାହରଲାଲ ମଧ୍ୟ ଦୂରରେ ରହି ପାରି ନ ଥିଲେ । ଆମେ ମୁଷ୍ଟିମେୟ ତରୁଣ ସେମାନଙ୍କ ତୁଳନାରେ କିବା ଛାର; ମାତ୍ର ସତ କହିବାକୁ ଗଲେ, ପ୍ରେରଣା ଯେଉଁଆଡ଼ୁ ଆସିଥାଉନା କାହିଁକି ଧ୍ୟେୟ ଥିଲା ଉତ୍କଳ-ଭାରତୀର ସେବାପୂଜା କରିବା ନୂଆ ନୂଆ ଫୁଲ ନେଇ । ଆମ୍ଭମାନଙ୍କ ଦୃଷ୍ଟିରେ ରାଧାନାଥ, ମଧୁସୂଦନ ମଧ୍ୟ ସେତିକିବେଳକୁ ପୁରାତନ ହୋଇ-ଯାଇଥିଲେ—ପରେ ଅନ୍ନଦାଶଙ୍କରଙ୍କ "ବସନ୍ତଗାଥା"ର ସମାଲୋଚନାରେ କିଞ୍ଚିତ୍ ପରିମାଣରେ ପ୍ରକାଶିତ ହୋଇଥିଲା ଆମ ଦଳଟିର ଏହି ଦୃଷ୍ଟିଭଙ୍ଗୀ । ମୁଁ ମନେ କରେ, ବିଚ୍ଛନ୍ଦଚରଣ ତାଙ୍କର ବ୍ୟଙ୍ଗ-କବିତା "ସବୁଜପତ୍ରୀ"ରେ ପ୍ରଥମ ଥରପାଇଁ ଆମ୍ଭମାନଙ୍କୁ ଯେଉଁ "ସବୁଜ" ଆଖ୍ୟା ଦେଇଥିଲେ, ଆମ୍ଭେମାନେ ଅଜ୍ଞାତ-ସାରରେ ସେହି ନାମଟିକୁ ବରଣ କରିନେଇଥିଲୁ ପରେ । କାରଣ ସେ ଘଟନା ଆଗରୁ ଆମ୍ଭେମାନେ ନିଜପ୍ରତି ବା ନବ୍ୟ ସାହିତ୍ୟପ୍ରତି—ଏପରିକି ନିଜର ଲେଖାରେ "ସବୁଜ" ନାମ ବ୍ୟବହାର କରିଥିଲୁ ବୋଲି ମୋର ସ୍ମରଣ ହେଉ ନାହିଁ । ଗୋପପୁର ଲୋକେ ରାଧାଙ୍କୁ 'କଳଙ୍କିନୀ' ପହିଲେ କହିଲେ—ପରେ ରାଧା ସେ ନାମରେ ନାମିତା ହୋଇ ଜୀବନର ସାର୍ଥକତା ଲାଭ କରିଥିଲେ । ତେଣୁ ଆମ ଦଳଟିର "ସବୁଜ" ନାମରେ ନାମକରଣ ବିଚ୍ଛନ୍ଦଚରଣ ଯେଉଁ ଉଦ୍ଦେଶ୍ୟରେ କରିଥାନ୍ତୁ ନା କାହିଁକି, ସେହି ନାମ ଧାରଣ କରି ଆମ୍ଭେମାନେ ସାର୍ଥକ ହୋଇଅଛୁ ।

( ୩ )

ଦୁଃଖର କଥା, ବିଚ୍ଛନ୍ଦଚରଣଙ୍କର ଏହି ବ୍ୟଙ୍ଗ-କବିତା "ସବୁଜପତ୍ରୀ" ପତ୍ରପତ୍ରିକାରେ ପ୍ରକାଶିତ ହୋଇନାହିଁ; ଏହାର ହାତଲେଖା କେତୋଟି କପି ସେ ସାହିତ୍ୟ-ରସ ପିପାସୁ ବନ୍ଧୁମାନଙ୍କ ମଧ୍ୟରେ ବିତରଣ କରିଥିଲେ ମାତ୍ର । ଯେଉଁ କପିଟି ବିପକ୍ଷ ଦଳର ଶିବିର ଭିତରକୁ ଶରନିକ୍ଷେପରୂପେ ଆସିଥିଲା, ତାହା ମଧ୍ୟ ଆମ୍ଭେମାନେ ହରାଇବସିଛୁ । ଗାଳି ଯେଉଁମାନଙ୍କୁ ଦିଆଯାଏ, ସେମାନେ ନିଜେ ଯଦି ସେ ଗାଳି ନ ଶୁଣିଲେ, ତେବେ ଗାଳି ଦେଲାବାଲା ଲୋକର ଆନନ୍ଦ ହୁଏ ନାହିଁ । ସେହି ଦୃଷ୍ଟିରୁ "ସବୁଜପତ୍ରୀ" ପ୍ରଥମେ ଆମ ହାତକୁ ଆସିଥିଲା । ତାହାର ଆଗମନ-ଭଙ୍ଗୀ ମଧ୍ୟ ଥିଲା ଠିକ ଶରନିକ୍ଷେପପରି । କାଗଜ ଖଣ୍ଡିକ ଗୁଡ଼ାଆହୋଇ ଖଣ୍ଡେ କାଠିରେ ବନ୍ଧା ହୋଇଥିଲା ଓ ସେ କାଠି ଆଗରେ ବନ୍ଧା ଥିଲା କୌଣସି ଚଢ଼େଇର ଦୁଇଟି ପର ଓ ତାହା ପ୍ରଥମେ ହସ୍ତଗତ ହେଲା ବୈକୁଣ୍ଠନାଥଙ୍କର । କବି ବୈକୁଣ୍ଠନାଥ ପିଲାଦିନୁ ଅତି ଗମ୍ଭୀର - ପ୍ରକୃତିର ଲୋକ—ସେ ତାହା

ଯଡ଼ି ଅଗ୍ନିଶର୍ମା ହୋଇଗଲେ ଓ ଆମ୍ଭମାନଙ୍କୁ ଦେଖାଇଲେ । ସତ କହିବାକୁ ଗଲେ ମୁଁ କିନ୍ତୁ ତାହା ପଢ଼ି ଅଗ୍ନିଶର୍ମା ହୋଇନାହିଁ । ମୋର ଦୃଷ୍ଟି ସେତେବେଳେ ଯୁବସମାଜରେ ବଳିଷ୍ଠ ଲେଖା ଖୋଜି ବୁଲୁଛି—ମୋର ବନ୍ଧୁମାନେ କଲ୍ଲୋଳରୁ ସୁଧାବିନ୍ଦୁ ଆହରଣ କରିବାରେ ବ୍ୟସ୍ତ ଥିଲେ ସିନା, ମାତ୍ର ମୁଁ ଭାବୁଛି କିପରି ଗୋଟିଏ ବଳିଷ୍ଠ ସଂଗଠନ ଗଢ଼ି ସାହିତ୍ୟିକମାନଙ୍କୁ ସାହିତ୍ୟ-ବ୍ୟବସାୟୀମାନଙ୍କ ହାତରୁ ରକ୍ଷା କରିବ । ତେଣୁ ବ୍ୟଙ୍ଗ-କବିତାଟି ଭିତରେ ଲେଖକର ବଳିଷ୍ଠ ଲେଖାର ପରିଚୟ ପାଇ ମୋତେ ବେଶ୍ ଭଲ ଲାଗିଲା ଓ ଆମ୍ଭମାନଙ୍କ ସମ୍ବନ୍ଧରେ ସେ ଯାହାସବୁ ଲେଖିଥିଲେ, ମୁଁ ତାହା ବେଶ ଭଲଭାବରେ ପଢ଼ି ଉପଭୋଗ କରିଥିଲି । ଲେଖକ କିଏ, ପ୍ରଥମେ ତାହା ଜଣା ନ ଥିଲା । ପରେ ଆମ୍ଭମାନେ ଯେତେବେଳେ ଜାଣିଲୁ ଯେ ଲେଖକ ସ୍ୱୟଂ ପ୍ରାଚୀନ ସାହିତ୍ୟର ଭବିଷ୍ୟତ ସେନାପତି ବିଚ୍ଛନ୍ଦଚରଣ ମେଘର ଉଢ଼ାଳରେ ଥାଇ ଅଳମ୍ବୁଷସମ ଏକା ଦୁଲ୍ ଦୁଲ୍ କରଇ ସମର, ସେତେବେଳେ ମୁଁ ମନରେ ହସି ହସି ଗଡ଼ିଗଲି । ପରେ ବିଚ୍ଛନ୍ଦଙ୍କୁ କହିଥିଲି, "ସାବାସ୍ ଭାଇ, ଲେଖାଟି ଖୁବ୍ ଭଲ ହୋଇଛି ।" ବିଚ୍ଛନ୍ଦ କେବଳ ମୁରୁକି ହସ ହସି କହିଥିଲେ, "ଆପଣ ତାହାହେଲେ ପଢ଼ିଛନ୍ତି ।" ମୁଁ କହିଲି, "ଥରେ ନୁହେଁ, ଦୁଇ ତିନି ଥର ।" ଆମ୍ଭମାନଙ୍କୁ ପ୍ରାଚୀନ ସାହିତ୍ୟର ବିରୋଧୀ ବୋଲି ଧରିନେଇ ବିଚ୍ଛନ୍ଦଚରଣ ଯେଉଁ ଭୁଲ୍ କରିଥିଲେ, ବ୍ୟଙ୍ଗ-କବିତାଟିରେ ମଧ୍ୟ ସେହିଭଳି ଭୁଲ୍ ଆହୁରି ଦୁଇ ତିନୋଟି ଥିଲା । ତାଙ୍କର ଗୋଟାଏ ବଡ଼ ଭୁଲ ଧାରଣା (କିପରି ହୋଇଥିଲା କେଜାଣି) ଥିଲା ଯେ ସବୁଜପତ୍ରରୂପେ ଜନୈକା ଶ୍ରୀମତୀ ଆମ୍ଭମାନଙ୍କ ଦଳର ପ୍ରେରଣାଦାୟିନୀ ଓ ତାଙ୍କୁ କେନ୍ଦ୍ର କରି ଆମ ଦଳଟା ନାଚୁଛି ।

( ୪ )

ପ୍ରାଚୀନ ସାହିତ୍ୟର ଗଡ଼ ବିଚ୍ଛନ୍ଦଚରଣଙ୍କ ହଷ୍ଟେଲ ପ୍ରକୋଷ୍ଠରୁ ମଝିରେ ମଝିରେ ଯେଉଁ ବିଦ୍ରୂପ ଆମ୍ଭମାନଙ୍କ କାନ ଭିତରକୁ ଜବରଦସ୍ତି ପଶିଆସୁଥିଲା, ସେଥିରୁ ଗୋଟାଏ ମୋର ଅଦ୍ୟାପି ମନେ ଅଛି । କୁହାଯାଇଥିଲା ଯେ ଜନୈକା ଶ୍ରୀମତୀ ସବୁଜଦଳର ଦ୍ରୌପଦୀ ଓ ଆମେ ସବୁ ତାର ପଞ୍ଚ-ପାଣ୍ଡବ । ବ୍ୟଙ୍ଗ-କବିତା "ସବୁଜପତ୍ର"ର ପ୍ରଥମ ଲାଇନ ଥିଲା—

"ସବୁଜପତ୍ର, ସବୁଜପତ୍ର, ଗୁବୁକ ସଜାଡ଼ ଧର,
ରିଙ୍ଗମିଷ୍ଟ୍ରେସ୍ ହୋ—ଗୁବୁକ ସଜାଡ଼ ଧର ।"

କବିତାଟିରେ ସବୁଜଦଳଟିକୁ ସର୍କସର ଏକ ଜନ୍ତୁଦଳ ସହିତ ତୁଳନା କରି ବିଚ୍ଛନ୍ଦଚରଣ ତାହାର ତଥାକଥିତ ନାୟିକାଙ୍କୁ ସମ୍ବୋଧନ କରି କହିଥିଲେ—ହେ ଭିନ୍ନ ଭିନ୍ନ ପ୍ରକୃତିର ପୁରୁଷମାନଙ୍କୁ ତୁମେ କିପରି ସମ୍ଭାଳିବ ? ହେ ରିଙ୍ଗ୍‌ମିଷ୍ଟ୍ରେସ୍, ତୁମେ ସେଥିପାଇଁ ଗୁବୁକର ପ୍ରୟୋଗ କରିବାକୁ ପ୍ରସ୍ତୁତ ହୁଅ ଓ ଏବେଠୁଁ ଗୁବୁକ ସଜାଡ଼ି ଧର । ପ୍ରଥମ କବିତାଟିରେ ସେହି ଶ୍ରୀମତୀଙ୍କର ଭାବୋଚ୍ଛ୍ୱାସ ଉଗ୍ରପଣିଆ, ବାଗ୍ମିତା ପ୍ରଭୃତିକୁ ଲକ୍ଷ୍ୟ କରି ଅନେକ ବ୍ୟଙ୍ଗୋକ୍ତି କରାଯାଇଥିଲା ଗୁବୁକ ସଜାଡ଼ି ଧରିବାର ପରାମର୍ଶର ଠିକ୍ ପରେ ପରେ । ତାପରେ ଶରବିଦ୍ଧ କରାଯାଇଥିଲା କାଳିନ୍ଦୀଚରଣଙ୍କୁ । ତାଙ୍କୁ କବି କହିଥିଲେ—'ତୁମେ ଗୋଟିଏ ଗମ୍ଭୀର ପ୍ରକୃତିର ଲୋକ । ତୁମ ମଧ୍ୟରେ ଯେଉଁ ପ୍ରତିଭା ଅଛି, ତାହା ଏ ବଣୁଆଙ୍କ ଭିତରେ ପଡ଼ିଲେ ନଷ୍ଟ ହୋଇଯିବ । ତୁମେ ଏଦଳରୁ ବାହାରିଆସ ।' ତା'ପରେ ଶରବିଦ୍ଧ ହୋଇଥିଲେ ଅନ୍ନଦାଶଙ୍କର । ତାଙ୍କର ରବୀନ୍ଦ୍ରପ୍ରୀତିକୁ ଲକ୍ଷ୍ୟ କରି କବି କହିଥିଲେ—'ତୁମକୁ ତ ଆଉ ଓଡ଼ିଶାଖରେ କବି ମିଳିଲେ ନାହିଁ, ତୁମେ କବି ଖୋଜିବାକୁ ବଙ୍ଗଦେଶକୁ ଗଲ ? ଘରର ରତ୍ନକୁ ନ ଚିହ୍ନି ଯେ ଲୋକ ପରଦୁଆରକୁ ଯାଏ, ସେ ଭିକାରି ଭିକ ନ ପାଇ ଅପମାନ ପାଏ, ଏକଥା ଜାଣ କି ? ତୁମେ ସେମିତି ଅପମାନ ଡାକିଆଣୁଛ ।' ବ୍ୟଙ୍ଗୋକ୍ତି ଟାଣୁଆ ଥିଲା ବୈକୁଣ୍ଠନାଥଙ୍କପାଇଁ । ସେତେବେଳକୁ ବୈକୁଣ୍ଠ-ନାଥଙ୍କର "ଦେଖିଲେ ଗୋଲାପୀ ଅଞ୍ଚଳ, ମୁଁ ଗୋ

ଶିଶୁ ପରି ହୁଏ ଚଞ୍ଚଳ" ଭଳିଆ ପ୍ରଣୟମୂଳକ କବିତା ପ୍ରକାଶିତ ହେଲାଣି ଓ ରୁଆଲିଷ୍ଟିକ ଭଙ୍ଗୀସୁ ଆଦରସରେ ସିଲମାନ ବଞ୍ଛାନିଧିଚରଣଙ୍କୁ ଏଭଳି ରୋମାଣ୍ଟିକ୍ ଭାବ ବଡ଼ ଲୁଣିଆ ଲାଗିଲାଣି । ତେଣୁ ଉକ୍ତ ବ୍ୟଙ୍ଗ-କବିତାରେ ବଞ୍ଛାନିଧିଚରଣ ବୈକୁଣ୍ଠନାଥଙ୍କୁ କଷିକରି ପାହାରଟିଏ ମାରିଥିଲେ । ଅତ୍ୟନ୍ତ ଦୁଃଖର କଥା, ସେ ପଦଗୁଡ଼ିକ କିମ୍ବା ତାହାର ସାରାଂଶ ମଧ୍ୟ ଆଜି ଆଉ ମୋର ମନେ ନାହିଁ । ଶେଷରେ ଥିଲି ମୁଁ । ସେତେବେଳକୁ ମୁଁ ଭଲ ବକ୍ତୃତା ଦେଇପାରେ ବୋଲି ନାଁ କରିଥିଲି । ମୋତେ ଲକ୍ଷ୍ୟ କରି ବଞ୍ଛାନିଧିଚରଣ ଲେଖିଥିଲେ— "ତୁମେ ଗୋଟାଏ ଠାଣୁଆ କାମ କଲାବାଲା ଲୋକ, ବକ୍ତୃତା ଦେଇ ମଞ୍ଚ ମଣିଷକୁ ମଜେଇପାର । ଦୁନିଆରେ ଏତେ ଅନ୍ୟାୟ ଏତେ ଅତ୍ୟାଚାର ଥାଇଁ ଥାଇଁ ସେସବୁ କିଛି ଦୂର କରିବାର ପ୍ରୟାସ ନ କରି ତୁମେ କି ନା ଏହି କଳ୍ପନାବିଳାସୀ ଚନ୍ଦ୍ରମାଗ୍ରସ୍ତଙ୍କ ଦଳରେ ପଶିଛ । ଏ ତୁମର ସ୍ଥାନ ନୁହେଁ—ପଳାଅ, ପଳାଅ ।' କହିବା ବାହୁଲ୍ୟ, କବି ବଞ୍ଛାନିଧିଚରଣଙ୍କର ଏଭଳି ପରାମର୍ଶ ଆମ୍ଭେମାନେ କେହି ଗ୍ରହଣ କରିନାହୁଁ । ସାନ ଦଳଟି ଦିନୁଦିନ ବଢ଼ିଛି—ସଭ୍ୟରୂପେ, ସହଚର ରୂପେ, ଲେଖକରୂପେ । ସେଥିରେ ଯୋଗ ଦେଇଛନ୍ତି ବହୁ ଲୋକ—ସୁପ୍ରଭା କର, ସନ୍ତୋଷ କର, ସରଳା ଦେବୀ ବୈଷ୍ଣବଚରଣ ଦାଶ, ମାୟାଧର ମାନସିଂହ, ସଚ୍ଚିଦାନନ୍ଦ ରାଉତରାୟ, ହରିଶ୍ଚନ୍ଦ୍ର ବଡ଼ାଲ, ନଗେନ୍ଦ୍ରନାଥ ରଥ, ରାଧାଚରଣ ପଣ୍ଡା, ବିନୋଦିନୀ ଷଡ଼ଙ୍ଗୀ, ଶାନ୍ତ ମୁଖାର୍ଜି, କମଳାକାନ୍ତ ଦାଶ ଏପରିକି କବିବର ଚିନ୍ତାମଣି ମହାନ୍ତି, ହରିସିଂହ ପାଣିଗ୍ରାହୀ ଓ ଅଧ୍ୟାପକ ଚିନ୍ତାମଣି ଦାଶ ।

( ୪ )

ସବୁଜ-ସାହିତ୍ୟ ସମିତିର ପ୍ରକାଶିତ ପ୍ରାୟ ୩୦ ଖଣ୍ଡ ବହି ଓ ମାସିକପତ୍ର "ଯୁଗବୀଣା" ମୁଷ୍ଟିମେୟ କର୍ମୀ• ଉତ୍କଳ-କମଳାର ପାଦପଦ୍ମରେ କ୍ରମଶଃ ଭେଟିଦେଲେ । ସମିତିର ଉଦ୍ଦେଶ୍ୟ ଖାଲି ଭାବାତ୍ମକ କବିତା ବା ଗଳ୍ପ, ଉପନ୍ୟାସ ସୃଷ୍ଟି କରିବା ନ ଥିଲା, ତାହା କ୍ରମଶଃ ପ୍ରକଟିତ ହେଲା । ତଥାପି ଆମ୍ଭେମାନେ ସେଇ ଯେ "ସବୁଜ-କବିତା" ଓ "ବାସନ୍ତୀ" ଦେଇ ଅଗ୍ରସାରମ୍ଭ କରିଥିଲୁ, ସେଥିପାଇଁ ବଞ୍ଛାନିଧିଚରଣ ଆମ୍ଭମାନଙ୍କୁ କଦାପି କ୍ଷମା କରିନାହାନ୍ତି । ପ୍ରଥମେ "ସବୁଜ-କବିତା"ରେ ପ୍ରକାଶିତ ହେଲା ଅନ୍ନଦାଶଙ୍କର, କାଳନ୍ଦୀଚରଣ, ବୈକୁଣ୍ଠନାଥ, ହରିହର ମହାପାତ୍ର ଓ ମୋର ପୂର୍ବରୁ ପ୍ରକାଶିତ କବିତା ସମଷ୍ଟି । ତା'ପରେ ପ୍ରକାଶିତ ହେଲା "ନୂଆ ଜଗତ" । ଲେଖକ ଓ ଲେଖିକାଙ୍କଦ୍ୱାରା କ୍ରମଶଃଭାବରେ ଲିଖିତ ଓ "ଉତ୍କଳ-ସାହିତ୍ୟ"ରେ ଧାରାବାହିକ ଭାବରେ ପ୍ରକାଶିତ ବିରାଟ ଉପନ୍ୟାସ "ବାସନ୍ତୀ" ବହିଟିର ସମ୍ପାଦକରୂପେ ମୁଁ ଉତ୍କଳ-ସାହିତ୍ୟରେ ପ୍ରକାଶିତ ବହୁ ଅଂଶକୁ ପୁସ୍ତକରୁ ବାଦ୍ ଦେଇଥିଲି । ତାହାର ପରେ ପରେ ହରିଶ୍ଚନ୍ଦ୍ର ବଡ଼ାଲଙ୍କର ଦେଶାତ୍ମବୋଧମୂଳକ ନାଟକ "ଦେଶର ଡାକ", ମାୟାଧର ମାନସିଂହଙ୍କର ନୃତ୍ୟ-ନାଟିକା "ପୂଜାରିଣୀ", ହରିହର ମିଶ୍ରଙ୍କ ନାଟକ "ଅର୍ଚ୍ଚନା", ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତା "ପାଥେୟ", ବୈକୁଣ୍ଠନାଥ ପଟ୍ଟନାୟକଙ୍କ ନାଟକ "ମୁକ୍ତିପଥେ", କାଳନ୍ଦୀଚରଣଙ୍କ ବିରାଟ ଉପନ୍ୟାସ "ଅମରଚିତା" ଓ "ମୁକ୍ତାଗଡ଼ର କ୍ଷୁଧା", ଚିନ୍ତାମଣି ମହାନ୍ତିଙ୍କ ବଡ଼ ଉପନ୍ୟାସ "ଶେଷସପ୍ତା", ହରିସିଂହ ପାଣିଗ୍ରାହିଙ୍କ ଉପନ୍ୟାସ "ତୁ ମୋ ମା", ଚନ୍ଦ୍ରମଣି ଦାଶଙ୍କ "ଧାମରା" କାବ୍ୟ, କମଳାକାନ୍ତ ଦାଶଙ୍କ ଉପନ୍ୟାସ "ବୋଉ", ଶାନ୍ତ ମୁଖାର୍ଜିଙ୍କ ଗଳ୍ପସମଷ୍ଟି "ଶରନ୍ତୀ" ଓ ମୋର ଗଳ୍ପ ସଞ୍ଚୟନ "ପଞ୍ଚପୁଷ୍ପ" ପ୍ରକାଶିତ ହେଲା । କେବଳ ଏତିକି କରି ସବୁଜ-ସାହିତ୍ୟ ସମିତି ଯଦି କ୍ଷାନ୍ତ ହୋଇଥାନ୍ତେ, ତେବେ ହୁଏତ ବଞ୍ଛାନିଧିଚରଣଙ୍କ ଅଭିଯୋଗ ଯେ ଆମ୍ଭେମାନେ ଖାଲି କବିତା-ଉପନ୍ୟାସପ୍ରିୟ, ଅନ୍ତତଃ ଆଂଶିକଭାବରେ ସତ୍ୟ ବୋଲି ଆମ୍ଭେମାନେ ମାନି ନେଇ ପାରିଥାନ୍ତୁ । ମାତ୍ର ଉତ୍ତରାରେ ବଳିଷ୍ଠ ସାହିତ୍ୟ-ସୃଷ୍ଟିକୁ ନଜର ଦେଇ ରଖି

ସମିତି ରାଧାଚରଣ ପଣ୍ଡାଙ୍କ ଛୋଟିଟି ବହି "ଗାନ" "ଧୂଆଁପତ୍ର" ଓ "ଅଫିମ", ବିନୋଦିନୀ ଷଡ଼ଙ୍ଗୀଙ୍କର "ସ୍ୱାସ୍ଥ୍ୟରକ୍ଷା" ଓ "ନାନା ଦେଶର ପିଲାଝିଅ" ମଧ୍ୟ ପ୍ରକାଶ ପାଇଥିଲା ଏବଂ ମାସିକପତ୍ର "ଯୁଗବାଣୀ"ରେ ଦେଶବିଦେଶର ନାନାବିଧ ସାହିତ୍ୟର ଓ ଜ୍ଞାନବିଜ୍ଞାନର ପରିଚୟ ଦେଇ ସାହିତ୍ୟ କ୍ଷେତ୍ରରେ ଉଦାରଭାବାପନ୍ନ, ବଳିଷ୍ଠ ଓ ସର୍ବାଙ୍ଗୀନ ସାହିତ୍ୟ ସୃଷ୍ଟି ଯେ ସମିତିର ଏକମାତ୍ର କାମ୍ୟ, ତାହା ପ୍ରମାଣ କରିପାରିଥିଲା । ମୁଁ ଏହା ବିଶେଷଭାବରେ ଉଲ୍ଲେଖ କରିବାକୁ ଚାହେଁ ଯେ କି ମୁଁ "ଯୁଗବାଣୀ"ରେ କି ତାର ପ୍ରକାଶିତ ୩୦ ଖଣ୍ଡି ବହିରେ ସବୁଜ-ସାହିତ୍ୟ ସମିତି କେଉଁଠି ହେଲେ ପ୍ରାଚୀନ ସାହିତ୍ୟର ବିରୋଧ କରିନାହିଁ ଅଥବା ପ୍ରାଚୀନ ସାହିତ୍ୟିକମାନଙ୍କୁ ବା ସେମାନଙ୍କର ସାହିତ୍ୟ-ସୃଷ୍ଟିକୁ ସାନ କରି ଦେଖାଇ ନାହିଁ । ତଥାପି ବିଚ୍ଛନ୍ଦଚରଣ କଦାପି ଆମ୍ଭମାନଙ୍କପ୍ରତି ସଦୟ ହୋଇନାହାନ୍ତି । ଏ ବିଷୟରେ ସେ ବଡ଼ା ଅନୁଦାର ଓ ଏକଦେଶଦର୍ଶୀ ଥିଲେ । ସେ ମନେ କରୁଥିଲେ ଯେ ଗଳ୍ପ, ଉପନ୍ୟାସ, ନାଟକ, ଛନ୍ଦଲୟହୀନ କବିତା ପ୍ରଭୃତି ସୃଷ୍ଟି କରି ସବୁଜ-ସାହିତ୍ୟ ସମିତି ପ୍ରାଚୀନ ସାହିତ୍ୟର ପ୍ରସାରରେ ବାଧା ସୃଷ୍ଟି କରୁଅଛନ୍ତି ଏବଂ ଦେଶ-ବିଦେଶରୁ ଶୈଳୀ, ଶବ୍ଦାବଳୀ ଓ ଜ୍ଞାନ ଆହରଣ କରିବାଦ୍ୱାରା ପ୍ରାଚୀନ ଓଡ଼ିଆ-ସାହିତ୍ୟ-ଭଣ୍ଡାରର ଅଶେଷ ସମ୍ପଦକୁ ଲୋକଚକ୍ଷୁରେ କ୍ଷୁଦ୍ର ପ୍ରତିପନ୍ନ କରୁଅଛନ୍ତି । ଏଦେଶର ଦୁର୍ଭାଗ୍ୟ—"ସବୁଜ-ସାହିତ୍ୟ ସମିତି" ବହୁ ବର୍ଷଧରି କର୍ମଠ ରହିପାରିଲା ନାହିଁ । ଏହି ସମିତିର ଅକାଳ-ମୃତ୍ୟୁ ନ ହୋଇଥିଲେ ଖାଲି କାବ୍ୟ, କବିତା, ନାଟକ, ଗଳ୍ପ, ଉପନ୍ୟାସ ନୁହେ, ଅର୍ଥନୀତି, ବିଜ୍ଞାନ ପ୍ରଭୃତି ବିଷୟରେ ମଧ୍ୟ ଆଧୁନିକ କାଳୋପଯୋଗୀ ଗ୍ରନ୍ଥମାନ ସମିତି ପ୍ରକାଶ କରି-ପାରିଥାନ୍ତା ଏବଂ ସମିତି ଯେ ମକରନ୍ଦପାୟୀ କେତୋଟି ସ୍ୱପ୍ନ-ବିହ୍ୱଳ ଭ୍ରମରର କର୍ମସ୍ଥଳୀ ନ ଥିଲା, ତାହା ପ୍ରମାଣ କରିପାରିଥାନ୍ତା । ଆମ୍ଭମାନଙ୍କର ଦୁର୍ଭାଗ୍ୟ ଯେ ସମାଲୋଚକ ବନ୍ଧୁମାନଙ୍କୁ ନିଜର ସମ୍ପୂର୍ଣ୍ଣ ପରିଚୟ ଦେବାପୂର୍ବରୁ ଆମ୍ଭେମାନେ ବିଲୟ ଭଜିଲୁ । ତଥାପି ଯେଉଁ ୩୦ ଖଣ୍ଡ ବହି ଓ ମାସିକପତ୍ର "ଯୁଗବାଣୀ" ସମିତି ପ୍ରକାଶ କରିପାରିଥିଲା, ସମିତିର ଆଦର୍ଶକୁ ଓ କାର୍ଯ୍ୟକଳାପକୁ ସେମାନଙ୍କଦ୍ୱାରା ବିଚାର କରିବା ଉଚିତ । କେବଳ ବିଚ୍ଛନ୍ଦଚରଣ ଯେ ତାହା କରିନାହାନ୍ତି, ତାହା ନୁହେ—ଅନ୍ୟମାନେ ମଧ୍ୟ ଖାଲି "ସବୁଜ-କବିତା" ଓ "ବାସନ୍ତୀ" ପଢ଼ି ଆମ୍ଭମାନଙ୍କୁ ଭୁଲ ବୁଝିଥିଲେ । ସ୍ୱୟଂ ମୁରାରିମୋହନ ଜେନା ତାଙ୍କର "ସବୁଜ-ସାହିତ୍ୟ ଓ ବୈକୁଣ୍ଠନାଥ" ନାମକ ଆଲୋଚନାମୂଳକ ଗ୍ରନ୍ଥରେ କେବଳ ପ୍ରଥମ ଗ୍ରନ୍ଥ "ସବୁଜ" କବିତା ଉପରେ ନିର୍ଭର କରି ସମିତିର ଉଦ୍ୟୋକ୍ତାମାନଙ୍କପ୍ରତି ନାନା କଟୂକ୍ତି କରିଅଛନ୍ତି; ଯାହାକି ୩୦ ଖଣ୍ଡଯାକ ବହି ପଢ଼ିଥିଲେ ସେ କଦାପି କରି ନ ଥାନ୍ତେ । "ବାସନ୍ତୀ" ଉପନ୍ୟାସରେ ଯେଉଁ ଧରଣର ସମାଜ-ସଂସ୍କାରର ଇଙ୍ଗିତ ଥିଲା, ବର୍ତ୍ତମାନ ସମାଜ ତାହାଠାରୁ ଅନେକ ଦୂରକୁ ଆଗେଇଗଲାଣି—ତଥାପି ପ୍ରାୟ ୩୦ ବର୍ଷ ପୂର୍ବେ ତାହାର ପ୍ରଥମ ପ୍ରକାଶନ ସମୟରେ ରକ୍ଷଣଶୀଳ ଲୋକେ ତା'ପ୍ରତି ନାକ ଟେକିଥିଲେ ଏବଂ ସେଇ ନାକଟେକାଟା ବିଶେଷ ଭାବରେ ପଡ଼ିଥିଲା ସବୁଜ-ସମିତି ଉପରେ । ବିଚ୍ଛନ୍ଦଚରଣ ପୂରାପୂରି ରକ୍ଷଣଶୀଳ ଥିଲେ ବୋଲି ଆମ୍ଭେମାନେ ତାଙ୍କର ଶୁଭଦୃଷ୍ଟି ପାଇନାହୁଁ ।

(୭)

ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ନେତୃତ୍ୱ ଓ ଯୋଗ୍ୟ ସଂସ୍ଥାପକ ଓ ପରିଚାଳକ ବିଚ୍ଛନ୍ଦଚରଣଙ୍କ ହାତରେ "ପ୍ରାଚୀ ସମିତି" ଦିନକୁ ଦିନ ଶୁକ୍ଳପକ୍ଷର ଚନ୍ଦ୍ରମାପରି ବଢ଼ିଚାଲିଲା । ଛାନ୍ଦ, ଚଉତିଶା, ପ୍ରାଚୀନ କାବ୍ୟ, ମଧ୍ୟଯୁଗୀୟ ପୁରାଣ ପ୍ରଭୃତି ନବକଳେବର ଧାରଣ କଲା ଓ ଅଧୁନା ଗ୍ରାହ୍ୟ ଟୀକାସମ୍ବଳିତ ହୋଇ ଉତ୍କଳ-ଭାରତୀର ବେଦୀମୂଳ ଆଲୋକିତ କରିବାକୁ ଲାଗିଲା ।

ବଛନ୍ଦଚରଣ ଏଥିପାଇଁ ଯେଉଁ ପରିଶ୍ରମ କରୁଥିଲେ, ସାହିତ୍ୟସାଧନାର କ୍ଷେତ୍ରରେ ଉତ୍କଳରେ ବହୁ କମ୍ ଲୋକ ଏପରି ପରିଶ୍ରମ କରିଅଛନ୍ତି । କେବଳ ସେତିକି ନୁହେଁ, ବାଛି ବାଛି ଉକ୍ତ ସାହିତ୍ୟର ରତ୍ନରାଜିକୁ ସେ ଇଂରାଜୀରେ ଅନୁବାଦ କରି ପ୍ରକାଶ କରିଥିଲେ ଓ ଏସବୁ ଅମୂଲ୍ୟ ରତ୍ନ ଓଡ଼ିଶା ବାହାରେ ରସିକମାନଙ୍କ ଦୃଷ୍ଟିକୁ ଆସି ଓଡ଼ିଶାର ଟେକ ବଢ଼ାଇଲା । ସବୁଜଦଳ ଏହା ଶ୍ରଦ୍ଧାର ସହିତ ଲକ୍ଷ୍ୟ କରି ଆସିଅଛନ୍ତି ଓ ଦୂରରୁ ବଛନ୍ଦଚରଣଙ୍କୁ ଅଭିନନ୍ଦନ କରିଆସିଅଛନ୍ତି । ଦୂରରୁ ଜାଣିଶୁଣି କହିଲି, କାରଣ ବଛନ୍ଦଚରଣଙ୍କ ଦୃଷ୍ଟିରେ ଆମ୍ଭେମାନେ ଥିଲୁ ଅପାଂକ୍ତେୟ । ଶାରଳା ମହାଭାରତରେ ଲିଖିତ ଅସଂଖ୍ୟ କାଳ୍ପନିକ କାହାଣୀ, ଯାହା କି ମହର୍ଷି ବେଦବ୍ୟାସଙ୍କର ମୂଳ ସଂସ୍କୃତ ମହାଭାରତରେ ନାହିଁ, ବିପ୍ର ନୀଳାମ୍ବରଙ୍କର "ଦେଉଳ-ତୋଳା" ସୁଆଙ୍ଗ, ପିଣ୍ଡିକ ଶ୍ରୀଚନ୍ଦନଙ୍କର ବଙ୍ଗଳାମିଶ୍ରିତ ଭାଷାରେ ଲିଖିତ "ବସନ୍ତ-ରାସ" ଓ "ଶରତ୍-ରାସ"; ଅଚ୍ୟୁତାନନ୍ଦଙ୍କର "ମାଳିକା" ଯାହାର ଅଧିକାଂଶ ଇତିହାସ ଅଳୀକ ବୋଲି ପ୍ରମାଣ କରିଅଛି, ଯଶୋବନ୍ତ-ଦାସଙ୍କର ବଙ୍ଗଦେଶରେ ପ୍ରଚଳିତ "ଗୋବିନ୍ଦଚନ୍ଦ୍ର କାହାଣୀ", ପୀତାମ୍ବର ଦାସଙ୍କର "ନୃସିଂହ ପୁରାଣ"ରେ ଲିଖିତ ଶୁକ-ମେନକା ସମ୍ବାଦ ଯାହାକି ମୋପାସାଁ ବ୍ୟାଲଜାକ୍‌ଙ୍କ ପ୍ରଣୟମୂଳକ କ୍ଷୁଦ୍ର ଗଳ୍ପଠାରୁ, ଉପେନ୍ଦ୍ର ଭଞ୍ଜଙ୍କ "ଲାବଣ୍ୟବତୀ"ର ପ୍ରେମକାହାଣୀ ବା "ରସ-ପଞ୍ଚକ" ବା "ରସିକହାରାବଳୀ", ଅଭିମନ୍ୟୁ ସାମନ୍ତ-ସିଂହାରଙ୍କର "ବାଘଗୀତ", ଯହିଁରେ ବାଘ ଶିକାର ବର୍ଣ୍ଣିତ ହୋଇଅଛି ଅଥବା "ଚଢ଼େଇଗୀତ" ଯହିଁରେ ବୁଲ୍‌ବୁଲ୍ ଚଢ଼େଇମାନଙ୍କର ଲଢ଼େଇ ବର୍ଣ୍ଣିତ, ଯଦୁମଣି ମହାପାତ୍ରଙ୍କର "ଯଦୁମଣି ରହସ୍ୟ", ଦେବଦୁର୍ଲଭ ଦାସଙ୍କର "ରହସ୍ୟମଞ୍ଜରୀ" ଅଥବା ଭୂପତି ପଣ୍ଡିତଙ୍କର "ପ୍ରେମପଞ୍ଚାମୃତ", ଅରକ୍ଷିତ ଦାସଙ୍କର ବାସ୍ତବରେ ଆତ୍ମଜୀବନୀ, ଯାହାର ଅନ୍ୟ ନାମ ସେ "ମହିମଣ୍ଡଳଗୀତା" ରଖିଅଛନ୍ତି, ଭୀମା ଭୋଇଙ୍କ "ସ୍ତୁତିଚିନ୍ତାମଣି"ରେ ହିନ୍ଦୁର ଠାକୁରଙ୍କ ପୂଜାଅର୍ଚ୍ଚନା ତ୍ୟାଗ, ଆରବ୍ୟ ଉପନ୍ୟାସ ଭଳି ବ୍ରଜନାଥ ବଡ଼ଜେନାଙ୍କ ଗଦ୍ୟକାବ୍ୟ "ଚତୁର-ବିନୋଦ" ଯାହାର ଚାରିଖଣ୍ଡ "ହାସବିନୋଦ" "ରସବିନୋଦ" "ନୀତିବିନୋଦ" ଓ "ପ୍ରୀତିବିନୋଦ"ରେ ଅତି ମର୍ମସ୍ପର୍ଶୀ ରସାଳ ଲେଖା ଭରିରହିଛି ଏବଂ ସେହି ବଡ଼ଜେନାଙ୍କର "ସମରତରଙ୍ଗ" ଯାହାକି ଟଲଷ୍ଟୟଙ୍କ "War and Peace"ର ଅଂଶବିଶେଷକୁ ମନେ ପକାଇଦିଏ—ସବୁ କେବଳ ପ୍ରାଚୀନ ବୋଲି ପ୍ରିୟ ଥିଲା ବଛନ୍ଦଚରଣଙ୍କ ପାଖରେ, ଯଦିଓ ଏମାନଙ୍କ ଭିତରେ କମ୍ ଉପନ୍ୟାସ, ଗଳ୍ପ ବା ନାଟକ ଭରି ରହିନାହିଁ ଏବଂ ଯଦିଓ ଏମାନଙ୍କ ଭିତରେ କମ୍ ସଂସ୍କାରମୂଳକ ମନୋବୃତ୍ତି ଦେଖାଯାଏ ନାହିଁ । ଅଥଚ ଖାଲି ଆଧୁନିକ ବୋଲି ସବୁଜ-ସମିତିର "ମୁକ୍ତାଗଡ଼ର କ୍ଷୁଧା", "ମୁକ୍ତିପଥେ", "ଦେଶର ଡାକ", "ପୂଜାରିଣୀ", "ବାସନ୍ତୀ", "ଶନିସପ୍ତା" କେହି ତାଙ୍କର ସୁଦୃଷ୍ଟି ପାଇଲେ ନାହିଁ । ବଛନ୍ଦଚରଣ ନିଜ ଦୃଷ୍ଟିଭଙ୍ଗୀକୁ କେବଳ ଯେ ଠିକ ମନେ କରୁଥିଲେ, ତାହା ନୁହେଁ; ଅନ୍ୟ ଦୃଷ୍ଟିଭଙ୍ଗୀପ୍ରତି ସେ ବଡ଼ ଅସହିଷ୍ଣୁ ମଧ୍ୟ ଥିଲେ ଏବଂ ଭଞ୍ଜଜୟନ୍ତୀର ଅବସରରେ ଓ ଅନ୍ୟାନ୍ୟ ସଭାସମିତିରେ ଆଧୁନିକ ସାହିତ୍ୟର ପୂଜାରୀମାନଙ୍କୁ ଅତ୍ୟନ୍ତ କଟୁଭାଷାରେ ସମାଲୋଚନା କରୁଥିଲେ । ଏଥିପାଇଁ ସେ ଆଧୁନିକମାନଙ୍କ ମଧ୍ୟରେ ଅପ୍ରିୟ ହୋଇଥିଲେ ମଧ୍ୟ ତାଙ୍କପ୍ରତି ଆଧୁନିକମାନଙ୍କର ଶ୍ରଦ୍ଧା ତିଳେହେଲେ କେବେ କମିନାହିଁ । ୧୯୨୯ ବେଳକୁ ଏହି ଭିନ୍ନ ଦୃଷ୍ଟିଭଙ୍ଗୀ କଥାର ପରିମାଣରେ ପ୍ରକାଶିତ ହୋଇଥିଲା ମୋର ଓ ତାଙ୍କର ମସୀଯୁଦ୍ଧରେ ଓ ଇଂରାଜୀ ଭାଷାରେ । ସେ ନାମ ଗୋପନ କରି "The Oriya" ସାପ୍ତାହିକରେ ଲେଖୁଥାନ୍ତି ଓ ମୁଁ ନାମ ଗୋପନ କରି "The Star of Utkal"ସାପ୍ତାହିକରେ ଲେଖୁଥାଏ । ସେ ଜାଣିଥାଆନ୍ତି ଯେ ମୁଁ ତାଙ୍କ ବିରୁଦ୍ଧରେ ଲେଖେ

ଏବଂ ମୁଁ ଜାଣିଥାଏ ସେ ମୋ ବିରୁଦ୍ଧରେ ଲେଖନ୍ତି; ମାତ୍ର ଏହି ସମାଲୋଚନା କଦାପି ବ୍ୟକ୍ତିଗତ ସ୍ତରକୁ ଆସି ନାହିଁ । ଦେଖାହେଲା ମାତ୍ରକେ ସେଇ ସ୍ମିତହାସ୍ୟ ଓ ଅନର୍ଗଳ ତାଙ୍କର ପ୍ରାଚୀନ ସାହିତ୍ୟର ଗୁଣ କୀର୍ତ୍ତନ । ମୁଁ ଶ୍ରୋତା ମାତ୍ରେ ରହି ମୁଗ୍ଧ ହୋଇ ତାଙ୍କ କଥା ଶୁଣେ—ଦୂରରୁ ଆଜ ବଙ୍ଗ-କବିଙ୍କ ଭାଷାରେ ତାଙ୍କୁ କହେ ବଞ୍ଛାନିଧି କେତେ ଥର—'ଉପେନ୍ଦ୍ର ଭଞ୍ଜେର୍ ସେଇ କବିତା ସୁନ୍ଦର୍, ଗାଇଆ ମୋହିଆ ଛିଲେ ଆମାର ଅନ୍ତର୍ ।"

( ୭ )

ଶେଷଦେଖା ଭୁବନେଶ୍ୱରରେ ୧୯୫୯ ପୂଜା-ଛୁଟିରେ, P.E.N. Conference ସହିତ ସଂପୃକ୍ତ ନିଖିଳ ଭାରତୀୟ ଲେଖକ ସମ୍ମିଳନୀବେଳେ । ଭାରତର ବହୁ ପ୍ରତିଷ୍ଠିତ ଲେଖକ-ଲେଖିକା ସେ ସମ୍ମିଳନୀରେ ଯୋଗଦେଇଥିଲେ । ସେମାନଙ୍କୁ ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ରାଜୋଚିତ ଆତିଥ୍ୟ ଦେବାର ଆୟୋଜନ ଏବଂ ସଙ୍ଗେ ସଙ୍ଗେ ଓଡ଼ିଆ ଲେଖକ ସମ୍ମିଳନୀଟିଏ ଆହ୍ୱାନ କରିବାପ୍ରତି ଉଦାସୀନତା ଏବଂ ଉକ୍ତ ସମ୍ମିଳନୀକୁ ଆସୁଥିବା ଓଡ଼ିଆ ଲେଖକଙ୍କ-ପାଇଁ କୌଣସି ବ୍ୟବସ୍ଥା ନ ଥିବା ଦେଖି ମୁଁ ମର୍ମାହତ ହୋଇଥିଲି ଏବଂ ସେ ବିଷୟରେ ଲେଖକ-ସମ୍ମିଳନୀର ସାର୍ଥକତା ନାମକ ମୋର ଏକ ଲେଖା "ସମାଜ"ର ପି·ଇ·ଏନ୍. ବିଶେଷାଙ୍କ ପ୍ରକାଶ କରିଥିଲେ । ବଞ୍ଛାନିଧି-ଚରଣ ଠିକ୍ ମୋଭଳି ଓ ଅନ୍ୟ ଓଡ଼ିଆ ଲେଖକଙ୍କ ଭଳି ମର୍ମାହତ ହୋଇଥିଲେ ମଧ୍ୟ କିଛି କହିପାରୁ ନ ଥିଲେ । କାରଣ ସେତେବେଳେ ତାଙ୍କର ସରକାରୀ ଚାକିରି ଶେଷ ହେଉଥାଏ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀରେ ଚାକିରିଟିଏ ମିଳିବାର ଆଶା ଥାଏ । ତଥାପି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଅଧ୍ୟକ୍ଷତାରେ ଗୃହୀତ ଏକ କ୍ଷୁଦ୍ର ପ୍ରତିବାଦ ସଭାରେ ସେ ଯୋଗଦେଇଥିଲେ ଏବଂ ସର୍ବାନ୍ତଃକରଣରେ ଆମ୍ଭମାନଙ୍କୁ ସମର୍ଥନ କରିଥିଲେ । ସେ ସଭାପରେ ମତେ କହିଲେ, "ଆପଣଙ୍କ ଗାଡ଼ିରେ ନେଇ ମତେ ଘରେ ପହଞ୍ଚାଇ ଦିଅନ୍ତୁ ।" ମୁଁ ତାଙ୍କୁ ଘରକୁ ନେଇଗଲି, ଶିଶୁପରି ମୋ ଉପରେ ନିର୍ଭର କରି ଗାଡ଼ିରୁ ଓହ୍ଲାଇଲେ ଓ ଘର ଭିତରକୁ ଗଲେ । ତା' ପରେ ମୋର ଲେଖାଟିର ପ୍ରଶଂସା କରି ଗୋଟି ଗୋଟି କରି ନିଜର ସାହିତ୍ୟିକ-ଜୀବନର ବ୍ୟର୍ଥତା କଥା ଓ ଜୀବନରେ ପାଇଥିବା ଅବହେଳା କଥା କହିଲେ । ମୁଁ ଶୁଣି କହିଲି, "ବଞ୍ଛାନିଧି, ତଥାପି ହାରିବା ନାହିଁ । ଓଡ଼ିଶାର ବହୁ ସାହିତ୍ୟିକ ଅନାଦରରେ ଜୀବନ କଟାଇଅଛନ୍ତି । ଏଭଳି ଅନାଦର 'ସତ୍ତ୍ୱେ ଆମେ ସାହିତ୍ୟ-ସେବା କରିଯିବା ।" ଏ କଥା ମୁହଁରେ କହିଲି ସିନା, ମାତ୍ର ଏକରକମ ପଙ୍ଗୁ ହୋଇ ମଧ୍ୟ ବଞ୍ଛାନିଧିଚରଣ ଆଜୀବନ ସାହିତ୍ୟ-ସେବା ବିଷୟରେ ଯେଉଁ ନିଷ୍ଠାର ସହିତ ପ୍ରଗାଢ଼ ପରିଶ୍ରମ କରିଥିଲେ, ଦେଶପାଖରୁ ତାହାର ପ୍ରତିଦାନ ନ ପାଇ ତାଙ୍କ ଅନ୍ତର ଯେ କେତେ କାନ୍ଦୁଥିବ, ତାହା ଭଲଭାବରେ ବୁଝିପାରିଲି । ପୁଣି ମନେ ପଡ଼ୁଥିଲା—

"ଯେନ ପୂଜ୍ୟପୂଜା ବ୍ୟତିକ୍ରମ ଫଳ" ।



# ସ୍ମୃତି-ପୂଜା

ଶ୍ରୀ ରମେଶଚନ୍ଦ୍ର ଧଳ

କଳିଙ୍ଗ-ଭାରତୀ ପ୍ରକାଶନୀ ଦେଖି
ମନେ ପଡ଼ିଲା
ସେହି ବ୍ୟକ୍ତିଙ୍କର ସ୍ମୃତି······
ସାର୍ଥକ ପୁରୁଷ,
ବିଚ୍ଛନ୍ଦଚରଣ
ସମସ୍ତଙ୍କପରି ଜୀବନପ୍ରଦୀପ ତାଙ୍କର
ନିର୍ବାପିତ ହୋଇଗଲା·····
ବିଶ୍ୱାସ ହୁଏନି ।

ଭଞ୍ଜଙ୍କ ଶୈଳୀ······ତାଙ୍କର ପ୍ରତିଭା
ତାଙ୍କର ଜୟଗାନ ସେ ଆଜୀବନ କରିଆସିଥିଲେ
ଏଇ ବିଂଶ ଶତାବ୍ଦୀରେ······ଆଟମ୍ ଦୁନିଆରେ
ଅନେକେ ବ୍ୟଙ୍ଗ କରିଥିଲେ····· ଉପହାସ କରିଥିଲେ
କିନ୍ତୁ ଭୃଙ୍ଗ ଶିଖରପରି ପାଦଦେଶର ଏ ଧ୍ୱନି
ତାଙ୍କୁ ସ୍ପର୍ଶ କରିପାରି ନ ଥିଲା······ ।
ବାଦସାହାର ମନ ନେଇ ସେ କବିସମ୍ରାଟ୍‌ର
ସାହିତ୍ୟ-ସମାରୋହ ପାଳନ କରିଥିଲେ···
ଏକଥା କେହି ଅସ୍ୱୀକାର କରିପାରିବ ନାହିଁ ।

ସେହି ଭଞ୍ଜପ୍ରେମୀ
ବ୍ୟକ୍ତିବିଶେଷଭାବେ ଜନ୍ମ ନେଇଥିଲେ
କିନ୍ତୁ ମୃତ୍ୟୁବରଣ କଲେ ଏକ ଅନୁଷ୍ଠାନରୂପେ
ବହୁ ଧନୀକ, ରଜା ମହାରଜା ଯା' କରିପାରି ନ ଥିଲେ
ସେ ତାହା କରିପାରିଛନ୍ତି
ଏହା ଏକ ବିରାଟ ଅବଦାନ ଶାଶ୍ୱତ କୀର୍ତ୍ତି ।
ଧନ୍ୟ ସେ ବିଚ୍ଛନ୍ଦ······ସେ ଦୀର୍ଘାୟୁ ହୁଅନ୍ତୁ ।

କଳିଙ୍ଗ-ଭାରତୀ ପ୍ରକାଶନୀ ଦେଖି
ଏସବୁ ଆଜ ମନେ ପଡ଼ୁଛି
ସେ ଥିଲେ ସାହିତ୍ୟିକ, କବି, ବାଗ୍ମୀ
ନୂତନରେ ପୁରାତନର ରଙ୍ଗ ଦେବାରେ
ପ୍ରତିଭାଶାଳୀ ଶିଳ୍ପୀ ।
ମୃତ୍ୟୁ ତାଙ୍କ ନିକଟରେ ପରାଜୟ ସ୍ୱୀକାର କରିଛି ।
ଆଜି ତାଙ୍କର ଉଦ୍ଦେଶ୍ୟରେ
ମୁଁ ଶ୍ରଦ୍ଧା ନିବେଦନ କରୁଛି ।



# ବିଚ୍ଛନ୍ଦ-ସ୍ମୃତି

ଅଧ୍ୟାପକ **ଶ୍ରୀ ଗଙ୍ଗାଧର ବଳ,** ଏମ୍. ଏ.

୧୯୫୭ ସାଲର ଗ୍ରୀଷ୍ମାବକାଶ । ଗାଁରେ ସେତେବେଳେ ଥାଏଁ । ନିଦାଘର ଉତ୍ତାପ ଅସହ୍ୟ ହୋଇଉଠୁଥାଏ । ପୁଅର ପୀଡ଼ା ଓ ପିତୃବ୍ୟର ମୃତ୍ୟୁରେ ମନ ମୋର ଅବସନ୍ନ ହୋଇପଡ଼ୁଥାଏ ।

ଏହି ସମୟରେ ହଠାତ୍ କଳିଙ୍ଗଭାରତୀର ଅନ୍ୟତମ ଯୁବ-ଉଦ୍ୟୋକ୍ତା ରଜତବାବୁଙ୍କଠାରୁ ଖଣ୍ଡେ ଚିଠି ପାଇଲି । ଚିଠିଖଣ୍ଡ ଅତି ଜରୁରୀ । ରଜତବାବୁଙ୍କ ଅନୁରୋଧ—କଟକର ଶହୀଦ ଭବନରେ ଆୟୋଜିତ ଭଞ୍ଜଜୟନ୍ତୀରେ ଭଞ୍ଜସାହିତ୍ୟ ସମ୍ପର୍କରେ ଭାଷଣ ଦେବାକୁ ହେବ । ଏପ୍ରକାର ମାନସିକ ଅଶାନ୍ତି ମଧ୍ୟରେ ଯିବାକୁ ମୋର ମନ ହେଲା ନାହିଁ; କିନ୍ତୁ ବନ୍ଧୁଙ୍କର ସ୍ନେହ-ବନ୍ଧନ ଓ ଅନୁରୋଧ ଏଡ଼ି ନ ପାରି ସମ୍ମତି ଜଣାଇଦେଲି । କଟକରେ ପହଞ୍ଚି ରଜତବାବୁଙ୍କ ଘରେ ଅତିଥି ହେଲି । ମୁଁ ପୂର୍ବରୁ ଭଞ୍ଜକାବ୍ୟ ଓ ନୈଷଧ ସମ୍ପର୍କରେ ଭାଷଣ ଦେବାପାଇଁ ସ୍ଥିର କରି ଗୋଟିଏ ଦୀର୍ଘ ପ୍ରବନ୍ଧ ଲେଖିଥାଏଁ । ପ୍ରବନ୍ଧଟି ପଢ଼ି କଳିଙ୍ଗ-ଭାରତୀର ପ୍ରତିଷ୍ଠାତା ବିଚ୍ଛନ୍ଦବାବୁ ବିଶେଷ ଆନନ୍ଦିତ ହେଲେ ।

ଶହୀଦ ଭବନରେ କଳିଙ୍ଗ ଭାରତୀ ତା'ର ପୂର୍ବ ଗୌରବ ଓ ଆଭିଜାତ୍ୟ ରକ୍ଷା କରି ଭଞ୍ଜଜୟନ୍ତୀର ଆୟୋଜନ କରିଥାଏ । ଭିତରେ ଓ ବାହାରେ ବହୁ ଶ୍ରୋତା । ସେଦିନ ମେ ମାସର **୨୨** ତାରିଖ, ପୁଣି ଜୟନ୍ତୀର ଶେଷ ଦିବସ । ସଭାପତି ଥାଆନ୍ତି ଶ୍ରୀଯୁକ୍ତ ପ୍ରାଣନାଥ ମହାନ୍ତି, ଆଇ. ଏ. ଏସ. ।

କଳିଙ୍ଗ-ଭାରତୀ-ପ୍ରତିଷ୍ଠାତା ବିଚ୍ଛନ୍ଦବାବୁ ଗୌରବର ସହିତ ନିଜର ଆସନ ମଣ୍ଡନ କରିଥାନ୍ତି । ମୁଖମଣ୍ଡଳରେ ତାଙ୍କର ଆନନ୍ଦ ଓ ପ୍ରଶାନ୍ତିର ରେଖା ଫୁଟିଉଠୁଥାଏ । ପଙ୍ଗୁ ବିଚ୍ଛନ୍ଦଙ୍କର ପଦ ବିଚ୍ଛନ୍ଦ ହୋଇଥିଲେ ମଧ୍ୟ ହୃଦୟରେ ତାଙ୍କର ଅପୂର୍ବ ଛନ୍ଦର ନୃତ୍ୟ ଚାଲିଥାଏ— ସେ ଛନ୍ଦ ପୁଣି ଭଞ୍ଜୀୟ ସାରସ୍ୱତ-ଛନ୍ଦ ଓ ରାଗିଣୀର ଆଭିଜାତ୍ୟ ତଥା ମଧୁରିମାରେ ମଣ୍ଡିତ !

ମୋର ଅନ୍ୟ ବକ୍ତା ଓ ସଭାପତିଙ୍କର ଭାଷଣ ଶେଷ ହେଲା । ଭାଷଣପରେ ରଜତବାବୁଙ୍କ ଲିଖିତ "ବିରହୀ ଚନ୍ଦ୍ରଭାନୁ" ନାମକ ନୃତ୍ୟନାଟ୍ୟ କଳାବିକାଶ କେନ୍ଦ୍ରର ଛାତ୍ରଛାତ୍ରୀମାନଙ୍କଦ୍ୱାରା ପରିବେଷିତ ହେଲା । କଳାକାର-ମାନଙ୍କର ଅଙ୍ଗପ୍ରତ୍ୟଙ୍ଗର ଭାବମୁଖର ଲୀଳାୟିତ ଭଙ୍ଗୀ ଓ ନେପଥ୍ୟ ସଙ୍ଗୀତର ଲଳିତ ତରଙ୍ଗ ଏକ ଅପୂର୍ବ ଭାବାବେଶ ଓ ପୁଲକ ସୃଷ୍ଟି କରିଥାଏ ।

୧୯୫୭ର ଭଞ୍ଜଜୟନ୍ତୀର ଶେଷ ରଜନୀର କାର୍ଯ୍ୟକ୍ରମ କୃତୀ ପ୍ରତିଯୋଗୀମାନଙ୍କ ମଧ୍ୟରେ ପୁରସ୍କାର ବିତରଣପରେ ସାଙ୍ଗ ହେଲା । ବିଦାୟ ଅବସରରେ କଳିଙ୍ଗଭାରତୀ-ପ୍ରତିଷ୍ଠାତା ଗୁରୁଦେବ ବିଚ୍ଛନ୍ଦବାବୁଙ୍କୁ ତାଙ୍କର ଶିଷ୍ୟମାନେ ରିକ୍‌ସାରେ ନେଇ ବସାଇଲେ । କିଛିକାଳପାଇଁ ଜୟ ମା କଳିଙ୍ଗ ଭାରତୀର ଗୁରୁ-ଗମ୍ଭୀର ଧ୍ୱନିରେ ଶହୀଦ ଭବନର ମୁକ୍ତ ପ୍ରାଙ୍ଗଣ ପ୍ରତିଧ୍ୱନିତ ହୋଇଉଠିଲା ।

ନିଦାଘ ନିଶୀଥରେ ଚନ୍ଦ୍ରଙ୍କର ଜ୍ୟୋତ୍ସ୍ନା ଝରିପଡ଼ୁଥାଏ । ଶୁଭ୍ର ଜ୍ୟୋତ୍ସ୍ନା ଓ ମଳୟର ତାଳେ ତାଳେ ପ୍ରକୃତି 'ଚନ୍ଦନ-ଉତ୍ସବ' ପାଳିତ ହେଉଥାଏ । କଟକର ବିଭିନ୍ନ ସ୍ଥାନରେ ଗ୍ରାମ୍ୟ ଯାତ୍ରା-ସଙ୍ଗୀତ ଓ ଦକ୍ଷିଣର ଗୋଟିପୁଅ ସଙ୍ଗୀତର ମତାଣିଆ ତରଙ୍ଗ ପ୍ରାଣରେ ଅପୂର୍ବ ପୁଲକ ଆଣିଦେଉଥାଏ ।

ବିଚ୍ଛନ୍ଦବାବୁଙ୍କ ସହିତ ସ୍ୱଳ୍ପକାଳର ସମ୍ପର୍କ ମୋତେ ଦୀର୍ଘକାଳର ସ୍ନେହବନ୍ଧନପରି ଲାଗିଲା । ସେ ସ୍ନେହ ଓ

ଶ୍ରଦ୍ଧାଜଡ଼ିତ କଣ୍ଠରେ କହିଲେ, "ଆପଣଙ୍କର ଭଞ୍ଜ-ସାହିତ୍ୟ ଅନୁରାଗ ଦେଖି ମୁଁ ବିଶେଷ ଖୁସି ହେଲି । ଆପଣ ଲେଖା ଓ ବକ୍ତୃତାଦ୍ୱାରା ଆମର ଏହି ଅନୁଷ୍ଠାନକୁ ସାହାଯ୍ୟ କରିବେ ।" ତାଙ୍କର ସ୍ନେହ-କୋମଳ ବାଣୀରେ ମୁଁ କିଣିହୋଇଗଲି । ପୁଣି କହୁ କହୁ ସେ କହିଲେ, "ମଧ୍ୟଯୁଗର ସାହିତ୍ୟ ବିଶେଷତଃ ଭଞ୍ଜସାହିତ୍ୟର ଆଲୋଚନା କ୍ଷେତ୍ରରେ ବର୍ତ୍ତମାନ ଅରାଜକତା ଦେଖାଦେଉଛି । ଆଜିର କେତେକ ତଥାକଥିତ ପଲ୍ଲବଗ୍ରାହୀ ସମାଲୋଚକଙ୍କ-ଠାରେ ରସବୋଧ ଓ ଅଳଙ୍କାର-ଚର୍ଚ୍ଚାର ବିଶେଷ ଅଭାବ ଦେଖାଦେଇଛି । ଅଧ୍ୟୟନ ନାହିଁ, ଚିନ୍ତା ନାହିଁ, ମନନଶୀଳତା ନାହିଁ—ବଡ଼ ଆଶ୍ଚର୍ଯ୍ୟ ଓ ଦୁଃଖ ଲାଗେ । ଯେଉଁ କବିସମ୍ରାଟ୍ ଓଡ଼ିଆଜାତିର ଗର୍ବ ଓ ଗୌରବ, ସେ ପୁଣି ଥୋକାଏ ଆଧୁନିକପନ୍ଥୀଙ୍କ ଆଖିରେ ନଗ୍ନ, ଅଶ୍ଳୀଳ, ଦୁର୍ବୋଧ,ପୁଣି ସାମାନ୍ୟ କବି ! ସେକ୍‌ସପୀୟର ଯେଉଁଠି ଇଂରେଜ ଜାତିଙ୍କ ମଧ୍ୟରେ ଦେବତାର ଗୌରବ ପାଇଛନ୍ତି, ଆଜି କେତେକ ଓଡ଼ିଆଙ୍କ ଆଖିରେ ଏ ଜାତିର କବିସମ୍ରାଟ୍ ସାମାନ୍ୟ କବି ! ଏହାଠାରୁ ବଳି କ୍ଷୋଭର ବିଷୟ କ'ଣ ହୋଇପାରେ ? ଭଞ୍ଜଙ୍କ ସମ୍ପର୍କରେ କେହି ପ୍ରଚାର କରିବାକୁ ଚାହିଁ-ନାହାନ୍ତି; କିନ୍ତୁ ଭଞ୍ଜ ନିଜର ଅମର କୃତିରେ ଆଜି ଓଡ଼ିଶାର ପ୍ରତି ପୁରପଲ୍ଲୀରେ ଲୋକହୃଦୟରେ ଅମର ହୋଇ ରହିଛନ୍ତି । କୋଣାର୍କ ଓ ଭୁବନେଶ୍ୱରର ଅକ୍ଷୟ କାରୁଶିଳ୍ପପରି ଉପେନ୍ଦ୍ର ଓଡ଼ିଆ ଜାତିର କାଳଜୟୀ ଗୌରବ; ଅଥଚ ଆଜି ତାଙ୍କ ସୃଷ୍ଟି ଓ ପ୍ରତିଭାର ଚାଲିଛି ଆତ୍ମଘାତୀ ଅବମାନନା ।

କବିସମ୍ରାଟ୍‌ଙ୍କର ପ୍ରତିଭାର ଆଲୋଚନା ଓ ତାଙ୍କ ସାହିତ୍ୟର ପ୍ରଚାର କେବଳ ଆମର ଲକ୍ଷ୍ୟ ନୁହେଁ; ତାଙ୍କ ସୃଷ୍ଟିର ଆଦର୍ଶରେ ଛନ୍ଦ ଓ ଶୈଳୀ ଆଦିର ପ୍ରଣୟନ ଆମର ଲକ୍ଷ୍ୟ—ତା'ହେଲେ ଆମ ଜାତିର ମଉଡ଼ମଣି କବିସମ୍ରାଟ୍‌ଙ୍କୁ ଆମେ ଉପଯୁକ୍ତ ସମ୍ମାନ ଦେଲୁ ବୋଲି ମନେ କରିବୁଁ ।"

ମୁଁ କହିଲି, "ଉପେନ୍ଦ୍ର ଆମ ଜାତିର ଗୌରବ, ପୁଣି ସେ ତାଙ୍କ ସୃଷ୍ଟିରେ ଅଦ୍ୱିତୀୟ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ତାଙ୍କର ସୃଷ୍ଟି ଓ ପ୍ରତିଭାର ନିରପେକ୍ଷ ଆଲୋଚନା ହେଲେ ଆହୁରି ସୁନ୍ଦର ହୁଅନ୍ତା । କବି ହୋଇ ଦୋଷ ନାହିଁ କାହାର ?"

ସେ କିନ୍ତୁ କହିଲେ, "ମୋ ମତରେ ଭଞ୍ଜ ନିର୍ଦ୍ଦୋଷ, ମୁଁ ତାଙ୍କର କୌଣସି ଦୋଷର ଅସ୍ତିତ୍ୱ ସ୍ୱୀକାର କରେନା । ପ୍ରତିକ୍ରିୟାଶୀଳ ଭଞ୍ଜବିରୋଧୀ ସମାଲୋଚକମାନଙ୍କୁ ଜବାବ ଦେବାପାଇଁ ଏ ନିହିତ ମୋର ଏକ ବଳିଷ୍ଠ ଆଭିମୁଖ୍ୟ । ଏ କ୍ଷେତ୍ରରେ ମୁଁ ହେଉଛି ଚରମପନ୍ଥୀ ।"

ବିଚ୍ଛନ୍ଦବାବୁଙ୍କର ଯୁକ୍ତି ମୋତେ ଅଡୁଆ ଲାଗିଲେ ମଧ୍ୟ ଏହିଦିଗରେ ତାଙ୍କର ବଳିଷ୍ଠ ପଦକ୍ଷେପର ଗୁରୁତ୍ୱ ମୁଁ ମନେ ମନେ ଉପଲବ୍ଧି କଲି । ତାଙ୍କର ପ୍ରଗାଢ଼ ଭଞ୍ଜପ୍ରୀତି ଓ ପ୍ରତିଭାପୂଜାର ନିଷ୍ଠା ବାସ୍ତବିକ ମୋ ହୃଦୟରେ ଗଭୀର ମୁଦ୍ରା ଅଙ୍କନ କରିଥିଲା ।

ତାଙ୍କର ଜୀବିତକାଳ ମଧ୍ୟରେ ସେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ପ୍ରତିଭାପୂଜାର ପଥ ପ୍ରସ୍ତୁତ କରି ଦେଇଗଲେ । ତାଙ୍କର 'କଳିଙ୍ଗଭାରତୀ' ଆଦର୍ଶରେ ଆଜି ଓଡ଼ିଶାର ବିଭିନ୍ନ ସ୍ଥାନରେ ଭଞ୍ଜଜୟନ୍ତୀ ଏବଂ କବିସୂର୍ଯ୍ୟ, ଅଭିମନ୍ୟୁ ପ୍ରଭୃତି ମଧ୍ୟଯୁଗୀୟ କବି-ମାନଙ୍କର ଜୟନ୍ତୀ ପାଳିତ ହେବା କମ୍ ଆନନ୍ଦ ଓ ଗୌରବର କଥା ନୁହେଁ ।

ପ୍ରାଚୀନ ଛନ୍ଦରେ କବିତା ରଚନା, ଭଞ୍ଜକୃତିର ଆଲୋଚନା, ପ୍ରାଚୀ ସମିତି ଜରିଆରେ ତାଙ୍କର ପ୍ରାଚୀନ ସାହିତ୍ୟ ସଂକଳନ ଓ ଚର୍ଚ୍ଚାର ନିଷ୍ଠା ଏବଂ ଭଞ୍ଜ ଓ କବିସୂର୍ଯ୍ୟଙ୍କ କବିତାର ଇଂରାଜୀ ଅନୁବାଦ ପ୍ରଭୃତିରେ ତାଙ୍କର ଆଜୀବନ ସାହିତ୍ୟସେବା ଓ କଳିଙ୍ଗଭାରତୀଙ୍କୁ ବିଶ୍ୱଦରବାରରେ ପରିଚିତ କରାଇବାରେ ତାଙ୍କ ପ୍ରାଣର ଅସରନ୍ତି ବ୍ୟାକୁଳତାର ପରିଚୟ ମିଳେ ।

---

# ସ୍ମୃତି-ତର୍ପଣ


**ଶ୍ରୀ ବସନ୍ତକୁମାର ଦାସ**


ତୁମେ କଳିଙ୍ଗଭାରତୀ ଚରଣକୁ
ପୂଜି ବରିନେଲ ଶେଷେ ମରଣକୁ
କାଳ ଅବିଶ୍ୱାସୀ ଦେହ ଗଲା ଗ୍ରାସି
ହାରିଲା ବିଭୂତି ହରଣକୁ ।୧।

ତୁମ ଶରୀର ଚନ୍ଦନ ପରଶରେ
ଚିତା ଯଜ୍ଞପୀଠ ହେଲା ହରଷରେ
ଶିବ-ବିଭୂତି କି ଶରୀର ଭସ୍ମ କି
ଜନତା ନେବ ସରସରେ ? ।୨।

ଜୀର୍ଣ୍ଣ, ପ୍ରାଚୀନ ପୁସ୍ତକ ସୀବନରେ
ତୁମେ ବ୍ୟସ୍ତ ରହିଗଲ ଜୀବନରେ
ତୁମେ ସୁରଧୂନି ଆସି ତୁନି ତୁନି
ଜାତି ପୂତ କଲ ପାବନରେ ।୩।

ଦେବ, ଘେନ ମୋ ପ୍ରଣତି ଚରଣକୁ
ତୁମ କୀରତି - କୁସୁମ ହରଣକୁ
ନ ଦେବ ଜାତି ସୁଯୋଗ ସମ୍ପ୍ରତି
(ତୁମ) ଦେହକ୍ଷୟକାଶ ମରଣକୁ ।୪।

ଦେବ, ତୁମପରି ଯୋଗ୍ୟ ନନ୍ଦନକୁ
ଦେବ କେଉଁ ପୂଜା, ଅର୍ଘ୍ୟ-ଚନ୍ଦନକୁ
ତୁମ ଛବିପାଶେ ଅଶ୍ରୁଜଳେ ଭାସେ
ସମ୍ବଲ ସେବକ - ବନ୍ଦନକୁ ।୫।



# କଅଣ ଲେଖିବ ?

## ଶ୍ରୀ ରାମପ୍ରସାଦ ସିଂହ

ବିଚ୍ଛନ୍ଦବାବୁ—ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ବିଷୟରେ ଲେଖିବି ? କଣ ଲେଖିବି ? କେଉଁଠୁ ଆରମ୍ଭ କରିବି ? ତାଙ୍କୁ ଡାକୁଥିଲି 'ବୁଢ଼ା-ଭାଇ' ବୋଲି । ମୋଠାରୁ ବେଶୀ ବୁଢ଼ା ନ ଥିଲେ । ଆମେ ସମସ୍ତେ ଥିଲୁ ଏକାଯୁଗର ଲୋକ, ଏକ ଆଖଡ଼ା-ପାଇକ । ସେ ଆଜି ନାହାନ୍ତି, ତାଙ୍କର ତିରୋଧାନର ବର୍ଷେ ହୋଇଗଲା—ଏ କଥା ସହଜରେ ଧାରଣା ଭିତରକୁ ଆସୁନାହିଁ । କାହିଁକି ମନେ ହେଉଛି, ସେ କଟକରେ ବା ଭୁବନେଶ୍ୱରରେ କେଉଁଠାରେ ଥିବେ ।

ସାହିତ୍ୟ-କ୍ଷେତ୍ରରେ ଯୌବନକାଳରୁ ଆମେ ଦୁହେଁ ଥିଲୁ ସହକର୍ମୀ । ସେତେବେଳେ ବିଶ୍ୱନାଥ କର, ଶଶିଭୂଷଣ ରାୟ, ଗୋପାଳଚନ୍ଦ୍ର ପ୍ରହରାଜ ଆଦି ଦନ୍ତା ଦନ୍ତା ସାହିତ୍ୟ-ରଥୀମାନେ ଉତ୍କଳ-ସାହିତ୍ୟ-ସମାଜକୁ ମାଡ଼ିବସିଥିଲେ । ଯେଉଁ ଯୁବକମାନେ ସେ ଅନୁଷ୍ଠାନରେ ଯୋଗଦେବାକୁ ଇଚ୍ଛା କରୁଥିଲେ, ସେମାନଙ୍କୁ ତ ଭିତରକୁ ପ୍ରବେଶ ନିଷେଧ ଥିଲା; ତା ସହିତ ସାହିତ୍ୟକ୍ଷେତ୍ରରେ ମଧ୍ୟ ସେମାନଙ୍କୁ ଅସ୍ପୃଶ୍ୟ ଶ୍ରେଣୀରେ ସ୍ଥାନ ଦେବାପାଇଁ ବ୍ୟବସ୍ଥା ହେଉଥିଲା । ସେଯୁଗର ଓଡ଼ିଆ ସାହିତ୍ୟ ଉପରେ ଥିଲା ସାହିତ୍ୟ-ସମାଜଦଳର ଏକଚାଟିଆ ଅଧିକାର । ବିଚ୍ଛନ୍ଦ ବାବୁ ଆଦି ଆମେ କେତେଜଣ ସାହିତ୍ୟ-ସେବୀ ଏହା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାର ସ୍ଥିର କରି ବାହାରିପଡ଼ିଲୁ । ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ ପ୍ରମୁଖ ମହାରଥୀମାନଙ୍କ ବିରୁଦ୍ଧରେ ଛିଡ଼ାହେବା ନିତାନ୍ତ ମୂର୍ଖତା ବୋଲି କେତେକ ଶୁଭାନୁଧ୍ୟାୟୀ ଆମମାନଙ୍କୁ ସତର୍କ କରାଇ ଦେଇଥିଲେ; ଆମମାନଙ୍କ ଅସ୍ତିତ୍ୱ ଓଡ଼ିଆ ସାହିତ୍ୟକ୍ଷେତ୍ରରୁ ଲୋପ ପାଇଯିବ ବୋଲି ପରୋକ୍ଷ ଉପାୟରେ ଆମମାନଙ୍କୁ ଜଣାଇଦିଆଗଲା । ବିଚ୍ଛନ୍ଦବାବୁ ତ ଅଟଳ, ବିଜୁଳି ବାଡ଼ିଟାକୁ ଟେକି ଠୁକି କହିଲେ, "ହଉ, ଦେଖାଯିବ ।" ସାଙ୍ଗେ ସାଙ୍ଗେ କବିତା ଲେଖାହେଲା, "ସରସ୍ୱତୀ-ବନ୍ଦନା" । ସାହିତ୍ୟ-ସମାଜରେ ବୋଲାହେବ ବୋଲି ସ୍ଥିରୀକୃତ ମଧ୍ୟ ହୋଇଗଲା । କେବଳ ଗୋଟିଏ ଧାଡ଼ି ସେଥିରୁ ମନେ ପଡ଼ୁଛି । ସରସ୍ୱତୀଙ୍କୁ କୁହାଯାଉଛି—'ଜୀର୍ଣ୍ଣମୁଖା ପିନ୍ଧି କି ଦିଶିବ ଶୋଭନ' । ଗୀତ ଶୁଣି ବୁଢ଼ାଏ ତ ଡେଇଁଲେ; ଆମେମାନେ ମଧ୍ୟ ଡେଇଁଲୁ । ଏ ଡିଆଁଡେଇଁ ଭିତରେ ବିଚ୍ଛନ୍ଦବାବୁ ଓ ଆଉ କେତେ ଜଣ ଯୁବକ ସାହିତ୍ୟସେବୀଙ୍କୁ ଠେଲିପେଲି ଉତ୍କଳ ସାହିତ୍ୟ ସମାଜରେ ପୂରାଇଦେଲୁ । ମୁଁ ସାହିତ୍ୟସେବୀ ନୁହେଁ ବୋଲି କହି ଜୀର୍ଣ୍ଣମୁଖାବାଲା-ମାନେ ମୋତେ ସାହିତ୍ୟ-ସମାଜରେ ପଶିବାକୁ ଛାଡ଼ିଲେ ନାହିଁ । ସେମାନେ ସମସ୍ତେ ଚାଲିଗଲେଣି । ବିଚ୍ଛନ୍ଦବାବୁ ମଧ୍ୟ ଗଲେଣି । ମୁଁ ଆଜି ବୁଢ଼ା । ତଥାପି ଉତ୍କଳ-ସାହିତ୍ୟ-ସମାଜ ବାହାରେ ମୁଁ ରହିଛି ।

ଉତ୍କଳ-ସାହିତ୍ୟ-ସମାଜରେ ସାହିତ୍ୟ ଯାହା ହେଉ ବା ନ ହେଉ, ରାଜନୀତିଟା ବଡ଼ ଘମାଘୋଟ ଆକାରରେ ସେତେବେଳେ ହେଉଥିଲା । ବିଚ୍ଛନ୍ଦବାବୁ ଉତ୍କଳ-ସାହିତ୍ୟ-ସମାଜରେ ନୂତନ ଜୀବନ ସଞ୍ଚାର କରିବାପାଇଁ ନିରବଚ୍ଛିନ୍ନ ଉଦ୍ୟମ କରିଥିଲେ । ତାହା ଫଳରେ ସାହିତ୍ୟ-ସମାଜର ଚେହେରା ବଦଳି ଯାଇଥିଲା । କିନ୍ତୁ ରାଜନୀତି ତ ରାଜନୀତି । ତାଙ୍କୁ ସେଠାରୁ ତଡ଼ିବାର ବ୍ୟବସ୍ଥା ହେଲା; ସେ ମଧ୍ୟ ବିରକ୍ତ ହୋଇ ଚାଲିଆସିଲେ । ଏହା ପରେ ପରେ ସେ "ଉତ୍କଳ-ତରୁଣ-ସାହିତ୍ୟ-ସମାଜ" ପ୍ରତିଷ୍ଠା କରିଥିଲେ ।

ବିଚ୍ଛନ୍ଦବାବୁ ଥିଲେ ଲଡ଼ୁଆ ଲୋକ; ତାଙ୍କୁ ତାଙ୍କର ଉପଯୁକ୍ତ କ୍ଷେତ୍ର ଗଢ଼ି ନ ଦେଲେ, ସେ ନିଜେ ନିଜେ ତାଙ୍କର କ୍ଷେତ୍ର ପ୍ରସ୍ତୁତ କରିନେଉଥିଲେ ।

ତାଙ୍କର ଜୀବନୀ ଲେଖା ହୋଇନାହିଁ । ତାଙ୍କର ଆତ୍ମ-ଜୀବନୀ ସେ ନିଜେ ଲେଖିଯାଆନ୍ତୁ ବୋଲି ତାଙ୍କୁ ବାରମ୍ବାର ଅନୁରୋଧ କରିଥିଲି; ସେ ଲେଖି ନାହାନ୍ତି । ଲେଖିବେ କେତେବେଳେ ? ନିଜର ଓ ନିଜର ପରିବାରର ଅନ୍ନ-ସଂସ୍ଥାନ କରିବାପାଇଁ ତ ତାଙ୍କୁ ମୁଣ୍ଡ ବିକିବାକୁ ପଡ଼ୁଥିଲା । ଯାହା ସାହିତ୍ୟ ସେ ସୃଷ୍ଟି କରିଯାଇଛନ୍ତି, ତାହା ତାହାଙ୍କର ପ୍ରତିଭାର ସାମାନ୍ୟ ସ୍ଫୁରଣ ମାତ୍ର । ଅନୁକୂଳ ବାତାବରଣ ପାଇଥିଲେ ତାଙ୍କଠାରୁ କଳିଙ୍ଗ-ଭାରତୀ ଯେ ଆଉ କେତେ ପୁଷ୍ପାଞ୍ଜଳି ପାଇଥାନ୍ତେ, ତାହା କିଏ କହିବ ? କିନ୍ତୁ ହୁଏତ ସମୟ ଆସିବ, ଯେତେବେଳେ ତାଙ୍କର ଶିଷ୍ୟମାନେ କିଛି ଆତ୍ମଜୀବନୀ ଲେଖିବେ ? ତଥାପି ବିଚ୍ଛନ୍ଦବାବୁ ବଞ୍ଚିଥିଲେ ଯାହା କହିଥାନ୍ତେ, ତାହା ଅକୁହା ରହିଯିବ ।

ଆଉ ଗୋଟିଏ କଥା । ସାତ ବର୍ଷକାଳ ତାଙ୍କ ସହିତ ସରକାରୀ କାର୍ଯ୍ୟ କରିବାର ସୁବିଧା ମୋର ହୋଇଥିଲା । ରାଜସେବା, ଅର୍ଥାତ୍ ସରକାରୀ ଚାକିରି-ଠାରୁ ହୀନ କାର୍ଯ୍ୟ ଆଉ କିଛି ଅଛି ବୋଲି ମୋର ବିଶ୍ୱାସ ନୁହେଁ । ଏଥିରେ ଅତି ଅଯୋଗ୍ୟକୁ ଯୋଗ୍ୟ, କ୍ଷୁଦ୍ରକୁ ମହାନ୍, ନଗଣ୍ୟକୁ ବରେଣ୍ୟ ବୋଲି କହିବାକୁ ହୁଏ; ନିଜର ବିବେକବିରୁଦ୍ଧରେ ବରାବର କାର୍ଯ୍ୟ କରିବାକୁ ପଡ଼େ । ଫଳରେ ମନୁଷ୍ୟର ଅମର ଆତ୍ମା ମଧ୍ୟ କଳଙ୍କିତ ହୋଇଯାଏ, ସ୍ୱାଧୀନ ଚିନ୍ତା ମରିଯାଏ, ମନୁଷ୍ୟ ନିର୍ଜୀବ ଯନ୍ତ୍ରରେ ପରିଣତ ହୋଇଯାଏ । ଲାଭ, କେବଳ ସାମୟିକ ଅନ୍ନ-ସଂସ୍ଥାନ । ବିଚ୍ଛନ୍ଦବାବୁ ସରକାରୀ ଚାକିରୀ ଗ୍ରହଣ କରିଥିଲେ; କିନ୍ତୁ ନିଜକୁ ବିକିଦେଇ ନ ଥିଲେ । ସରକାରୀ ଚାକିରିଆର ହୀନତା, ନୀଚତା ତାଙ୍କୁ ସ୍ପର୍ଶ କରି ନ ଥିଲା । ସବୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ରହି ମଧ୍ୟ ସେ ସାହିତ୍ୟସାଧନା କରୁଥିଲେ । ଯେତେବେଳେ ଦେଖାହୁଏ ଗୋଟାଏ କିଛି ନୂଆ ଗୀତ, ଗୋଟାଏ କିଛି ନୂଆ କବିତା ସେ ଶୁଣାଉଥିଲେ । ସରକାରୀ ଚାକିରିର ଜଞ୍ଜାଳ ଭିତରେ ଅନିନ୍ଦ୍ୟସୁନ୍ଦର ଭାବରେ ଯେ ସେ ବାଣୀ-ଆରାଧନା କରିପାରୁଛନ୍ତି, ତାହା ଦେଖି ମୁଗ୍‌ଧ ହେଉଥିଲି, ବିସ୍ମିତ ମଧ୍ୟ ହେଉଥିଲି ।

ଗୋଟି ଗୋଟି ହୋଇ ପୁରୁଣା ଦୀପ ଲିଭିଯାଉଛି । ବିଚ୍ଛନ୍ଦବାବୁ ବର୍ଷେହେଲା ଗଲେ; ଆମେମାନେ ଯେଉଁମାନେ ଆଜି ରହିଛୁଁ, ସେମାନେ ମଧ୍ୟ ଯିବେ । ଆମମାନଙ୍କଷରେ ଅନେକ ସାହିତ୍ୟସେବୀ ଆସିଲେଣି । ସେମାନଙ୍କୁ ଦେଖିଲେ ଗର୍ବରେ ଛାତି ଫୁଲିଉଠେ । ମନେ ହୁଏ, ସେହିମାନଙ୍କ ସାଧନାରେ ବିଚ୍ଛନ୍ଦବାବୁ ବଞ୍ଚିଛନ୍ତି, ଆମେମାନେ ମଧ୍ୟ ବଞ୍ଚିବୁ । କିନ୍ତୁ ଓଡ଼ିଆ ସାହିତ୍ୟ ଯେତେ ଦିନ ଥିବ, ପୁରୁଣା ଓଡ଼ିଆ ସାହିତ୍ୟ-ପ୍ରତି ଯେପର୍ଯ୍ୟନ୍ତ ଓଡ଼ିଆମାନଙ୍କର ଭକ୍ତି ଥିବ, ସେତେ ଦିନ ବିଚ୍ଛନ୍ଦବାବୁ ଜୀବିତ ରହିବେ—ତାଙ୍କର ସାଧନା ମଧ୍ୟ ଜୀବିତ ଥିବ ।



# କବି-ସ୍ମରଣିକା

## ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ

[ ରାଗ—କୌଶିକ ]

ହେ କବି ସ୍ୱଚ୍ଛନ୍ଦ ମନୋରମ ଛନ୍ଦ
ବନ୍ଦନାମୁ ଭଞ୍ଜପ୍ରେମିକ,
ପୁରାତନ ଛାନ୍ଦ ବିତରି ଆନନ୍ଦ
ଲଭିଲ ଯେ ସୁଧାକଣିକ
କବିଶେଖର, ଉଦ୍ଧରିଲ ଲୁପ୍ତ ରତନେ
ସାହିତ୍ୟ-ସାଧନେ ବାଣୀ-ଆରାଧନେ
କାବ୍ୟକବିତାର ଯତନେ ।୧।

ରସଗ୍ରାହୀ ତୁମେ, କର୍ମ - ରଙ୍ଗଭୂମେ
ବିରଚିଲ ପ୍ରାଣ - ଆରତି
ଆଜ ତୁମ ପୂଜା ରଚିବାକୁ ଧ୍ୱଜା
ଉଡ଼ାଏ "କଳିଙ୍ଗ - ଭାରତୀ"
କବିଶେଖର, ଥିବ ଯେତେ ଦିନ ଅବନୀ
ଗଗନେ ପବନେ ଅଙ୍କିତ ରହିବ
ତବ ମଧୁମୟ ଜୀବନୀ ।୨।

ବିମଳ ବଦନେ ଉତ୍ସବ ସଦନେ
କବି-କଞ୍ଜ - ଭୃଙ୍ଗ- ସଭାରେ,
ପ୍ରାଚୀନ ସଂସ୍କୃତ ପରମ୍ପରା ମତ
ବିଭୂଷିତ ନବ ପ୍ରଭାରେ
ରସଗ୍ରାହୀ ହେ, ଦେଇଗଲ ଯେଉଁ ସମ୍ମାନ
ଅଯୋଗ୍ୟା ଦୁହିତା ଛନ୍ଦ-ରଚୟିତା
ନୁହେ ସେ ଦାନର ସମାନ ।

ସ୍ମୃତଃ ଜାଗେ ମନେ ଏକାମ୍ରକାନନେ
"ସୁଭଦ୍ରା ପରିଣୟ" କାବ୍ୟ
ଶ୍ରୀକର - ପଲ୍ଲବେ ଅରପୁଁ ଦୁର୍ଲଭେ
ଯେଉଁ ବିମଳ ତୃପ୍ତିଲଭ
କବିଶେଖର, ଏବେ ଅଛୁ "ଋତୁ-ସଂହାର"
ସରଗ ସଦନେ ନନ୍ଦନକାନନେ
ବାନ୍ଧିବଟି କି ପ୍ରୀତି-ହାର ?

ଛନ୍ଦ - ପ୍ରବାହକ ହେ ରସଗ୍ରାହକ
ପୁରାତନ ଛନ୍ଦସାଧକ,
ତବ ଗତିପଥେ ସ୍ଥାପିଗଲ ସତେ
ସହସ୍ର ବାଣୀ - ଆରାଧକ .
ରସଗ୍ରାହୀ ହେ, ସାହିତ୍ୟ-ବସନ୍ତ-କାନନେ,
ଭ୍ରମି ଭ୍ରମାଇଲ, ରମି ରମାଇଲ
ପ୍ରାଚୀନ ମଧୁ ଆସ୍ୱାଦନେ ।

ବନ୍ଧୁର ଜୀବନେ ଅମୀୟ ପ୍ଲାବନେ
ସୁଧା - ନିର୍ଝର ପଡୁ ଝରି,
ସୁ-ଆଶିଷ ବୃଷ୍ଟି କର କର ସୃଷ୍ଟି
ସହସ୍ର ଭଞ୍ଜ ଅବତରି—
ହୃଦ-ବୀଣାରେ; ତୋଳନ୍ତୁ ସଙ୍ଗୀତ-ମୂର୍ଚ୍ଛନା,
ଭାରତେ ଭାରତୀ ଅରଚନେ ତୃଷ୍ଣା
ହୁଅନ୍ତୁ ସୁତୃପ୍ତ ଅଙ୍ଗନା ।

ଏ ଦୀନା କବିର ହୃଦ ସୁ-ଗମ୍ଭୀର-
ପ୍ରଦେଶୁଁ ଅଶେଷ ପ୍ରଣତି
ଡାକୁଛି ସୁଦୂରେ, ବିହାୟସପୁରେ
ହେବଟି ଘୁମୂରେ ଗଣତି
ଢାଳ ଆଶିଷ; ଶକ୍ତି ଜଳୁ କର-ଲେଖନୀ,
ଅଯୋଗ୍ୟା ତନୁଜା ତବଯୋଗ୍ୟ ପୂଜା
ବିରଚନେ ମନ୍ଦା-ଜୀବନୀ ।

# ଶ୍ରଦ୍ଧାଞ୍ଜଳି

## ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

ଜୀବନର ଅବିରାମ ସଂଗ୍ରାମ ଉପରେ ମୃତ୍ୟୁ ତାହାର ଚରମ ବିଜୟ ଘୋଷଣା କରିଛି । ବିଚ୍ଛନ୍ଦବାବୁ ଆମ ଭିତରୁ ଅନ୍ତର୍ହିତ ହୋଇଛନ୍ତି । ୧୯୭୧ ଜାନୁୟାରୀ ୧୪ ତାରିଖ ଅପରାହ୍ଣ ସ୍ଥାନୀୟ ବଡ଼ ଡାକ୍ତରଖାନାରେ ତାଙ୍କର ଦେହାବସାନ ଘଟିଲା ଓ କଟକ ସତୀଚୌରା ଶ୍ମଶାନରେ ଶେଷକୃତ୍ୟ କରାଗଲା । ଗତ ଛଅମାସ ହେଲା ପୀଡ଼ିତ ହୋଇ ସେ ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲେ । ଏଣିକି ଆଉ ସେ ବିଚ୍ଛନ୍ଦଚରଣ ପଟ୍ଟନାୟକ ନ ହୋଇ 'ସ୍ୱର୍ଗୀୟ' ବିଶେଷଣ ପାଇଛନ୍ତି ।

ମୁଖ୍ୟଭାବରେ ସେ ଓଡ଼ିଶାରେ ସାହିତ୍ୟିକ ଓ କବିରୂପେ ପରିଚିତ । ଆଜୀବନ ସାହିତ୍ୟ ହିଁ ତାଙ୍କର ପ୍ରଧାନ ବ୍ରତ ଥିଲା ଏବଂ ଛାତ୍ରାବସ୍ଥାରୁ ତାଙ୍କ କବିପ୍ରତିଭା ବିକଶିତ ହୋଇଥିଲା । ତାଙ୍କର ଯେଉଁ କବିତା-ସଂକଳନ ପ୍ରକାଶିତ ହୋଇଛି, ତହିଁରୁ ଜଣାଯାଏ, ଓଡ଼ିଆ କାବ୍ୟ-କବିତାର ପାରମ୍ପରିକ ରୀତି ସେ ଅନୁସରଣ କରିଛନ୍ତି । ଛାନ୍ଦ, ଚୌପଦୀ, ସଙ୍ଗୀତାଦିର ଛନ୍ଦ ଓ ପ୍ରକାଶଭଙ୍ଗୀ ତାଙ୍କ କବିତାବଳୀର ଆଙ୍ଗିକ ହୋଇଛି । ପାରମ୍ପରିକ ପଦ୍ଧତିକୁ ଅନୁସରଣ କରିବାରେ ସେ ଗର୍ବ ଓ ଗୌରବ ଅନୁଭବ କରୁଥିଲେ ଏବଂ ଆଧୁନିକ ରୀତିର ରଚନାକୁ ବିଦେଶୀୟ ତଥା ବିଜାତୀୟ ବୋଲି ଶତମୁଖରେ ନିନ୍ଦା ଓ ଘୃଣା କରୁଥିଲେ କାହାରିପ୍ରତି ଭ୍ରୂକ୍ଷେପ ନ କରି ।

ସେଥିଲାଗି ତାଙ୍କର ନିର୍ଭୀକ ନିଷ୍ଠୁର ସ୍ପଷ୍ଟବାଦିତା ବିସ୍ମୟ ସୃଷ୍ଟି କରେ । ସାହିତ୍ୟ ସର୍ବଦା ମଧୁରାଶ୍ରୟୀ । ସତ୍ୟର ରୂପ ଯେତେ ରୁକ୍ଷ କଠୋର ହେଲେହେଁ ତାହାକୁ ମଧ୍ୟ ସୁନ୍ଦର ସରସ କରି ପ୍ରକାଶ କରିବା କଳାର ଧର୍ମ । ସେଥିପାଇଁ କଥା ଅଛି—"ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ମା ବ୍ରୂୟାତ୍ ସତ୍ୟମ୍ ପ୍ରିୟମ୍ ।" କବି ବିଚ୍ଛନ୍ଦଚରଣ ନିଜର ତାରୁଣ୍ୟ ଓ ଯୌବନର ଯେଉଁସବୁ ଅନୁଭୂତି ଓ ଅଭିଜ୍ଞତା କବିତା ଆକାରରେ ପ୍ରକାଶ କରିଛନ୍ତି, ତହିଁରେ ଯେପରି ସରଳ ସ୍ପଷ୍ଟବାଦିତାର ସ୍ୱାକ୍ଷର ବିଦ୍ୟମାନ, ପରମ୍ପରାହୀନ ଆଧୁନିକ କବିତା ଉପରେ ସମାଲୋଚକ ବିଚ୍ଛନ୍ଦଚରଣଙ୍କ ଆକ୍ରମଣ ତହୁଁ ବଳି ନିଃସଂକୋଚ ଓ ନିର୍ମମ । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ତଥା ପ୍ରାଚୀନ ସାହିତ୍ୟର ପରମ୍ପରାପ୍ରତି ଯେ କେହି ଅବଜ୍ଞା, ଅବହେଳା କରିଛନ୍ତି, ତାଙ୍କ ପକ୍ଷରେ ବିଚ୍ଛନ୍ଦଚରଣଙ୍କ ଶାଣିତ ଆଘାତ ଏକ ଚରମ ଚେତାବନୀ । ସେ ଦୃଷ୍ଟିରୁ ବିଚ୍ଛନ୍ଦଚରଣ ଥିଲେ ଜଣେ ନିରାଟ ନଗ୍ନ ଉଗ୍ରପନ୍ଥୀ ।

ଓଡ଼ିଆର ପରମ୍ପରାକୁ ଯଥାଯୋଗ୍ୟ ସମ୍ମାନ ଦେବା ହିଁ ତାଙ୍କର ଏକମାତ୍ର କାମ୍ୟ ଓ ଧ୍ୟାନ ଥିଲା । ତହିଁରୁ କାହିଁ ହେଲେ ସାମାନ୍ୟ ବିଚ୍ୟୁତି ଘଟିବା ଦେଖିଲେ ସେ ଅସହ୍ୟବୋଧ କରୁଥିଲେ । ଜଣେ ମେଧାବୀ ଛାତ୍ରରୂପେ ସେ ଇଂରାଜୀ ଅନର୍ସ ସହ ବି.ଏ. ପାଶ କରି ଓକିଲାତି ମଧ୍ୟ ପାଶ୍ କଲେ । ମାତ୍ର ସାହିତ୍ୟକ୍ଷେତ୍ରରୁ ତାଙ୍କୁ ଆଉ କୌଣସି କର୍ମକ୍ଷେତ୍ର ଟାଣିନେଇପାରିଲା ନାହିଁ । ଛାତ୍ରାବସ୍ଥା ପରେ "ପ୍ରାଚୀ" ସମିତିର ଅନ୍ୟତମ ପ୍ରଧାନ ଉଦ୍ୟୋକ୍ତାରୂପେ ତାଙ୍କ ନାମ ଉଲ୍ଲେଖଯୋଗ୍ୟ । ତ୍ରୈମାସିକ ପ୍ରାଚୀ ଇଂରାଜୀ ପତ୍ରିକାର ସଂପାଦନରେ ତାଙ୍କର ଦକ୍ଷତା ସୁବିଦିତ । ଉତ୍କଳୀୟ ସଂସ୍କୃତିର ମୁଖପତ୍ର ହୋଇ ପ୍ରାଚୀ ଯେଉଁ ପ୍ରତିଷ୍ଠା ଅର୍ଜନ କରିଥିଲା,

ସେଥିଲାଗି ବିଚ୍ଛନ୍ଦବାବୁଙ୍କର ଇଂରାଜୀ ଭାଷାର ବ୍ୟୁତ୍ପତ୍ତି ଓ ସମ୍ପାଦକୀୟ ନିଷ୍ଠା ବିଶେଷଭାବରେ ଦାୟୀ । ରବୀନ୍ଦ୍ରନାଥଙ୍କ "ଦୁଇ ବିଘା ଜମି" କବିତାରେ ଓଡ଼ିଆ-ଚରିତ୍ରର କଳଙ୍କିତ ସୂଚନା ଉପରେ ସେ ଯେଉଁ ତୀବ୍ର ପ୍ରତିବାଦ କରିଥିଲେ, ତାହା ସ୍ୱୟଂ କବିଙ୍କୁ ମଧ୍ୟ ବିବ୍ରତ କରି ପକାଇଥିଲା । 'ଲାବଣ୍ୟବତୀ' ତଥା 'ମନବୋଧ ଚଉତିଶା' ଆଦି ପ୍ରାଚୀନ କାବ୍ୟକବିତାକୁ ଇଂରାଜୀ ଭାଷାରେ ଅନୁବାଦ କରି ସେ ଓଡ଼ିଆ ସାହିତ୍ୟର ଐତିହ୍ୟ ମର୍ଯ୍ୟାଦାକୁ ବୃହତ୍ତର ପାଠକସମାଜ ସମକ୍ଷରେ ଉପସ୍ଥାପିତ କରିଛନ୍ତି ।

ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ" ସଙ୍କଳନରେ, ପୁଣି ସରକାରୀ ଅନୁବାଦକ ଓ ଲୋକସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ "ଉତ୍କଳ ପ୍ରସଙ୍ଗ" ଓ "ଓଡ଼ିଶା ରିଭ୍ୟୁ"ର ସମ୍ପାଦନାରେ ଓ ଶେଷରେ ଓଡ଼ିଶା ସାହିତ୍ୟ ଏକାଡେମୀରେ କାର୍ଯ୍ୟ କରି ସେ କେତେକ ମାସ ତଳେ ଅବସର ଗ୍ରହଣ କରିଥିଲେ ।

"କଳିଙ୍ଗ ଭାରତୀ" ଓ "ଉତ୍କଳ-ଗୁରୁ-ସାହିତ୍ୟ-ସମାଜ" ପ୍ରତିଷ୍ଠାକରି ସେ ଗତ ବହୁ ବର୍ଷହେଲା କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଜୟନ୍ତୀକୁ ଯେଉଁ ଆକାର-ପ୍ରକାର ଦେଇଯାଇଛନ୍ତି, ତାହା ଉତ୍କଳର ସର୍ବତ୍ର ପୁରପଲ୍ଲୀରେ ପରିବ୍ୟାପ୍ତ ହୋଇପଡ଼ିଛି । ତାହାଙ୍କ ନିଜ ଭାଷାରେ ଜୟନ୍ତୀ ସମୟରେ ଜାତିର ସକଳ ଶ୍ରେଣୀର ଲୋକ କବିସମ୍ରାଟ୍‌ଙ୍କ ଲୋକୋତ୍ତର ବହୁତୋମୁଖୀ ପ୍ରତିଭାର ପୁଙ୍ଖାନୁପୁଙ୍ଖ ଆଲୋଚନା ନିମନ୍ତେ ଯେଉଁ ଉତ୍ସାହ ପ୍ରକାଶ କରନ୍ତି, ତାହା ବ୍ୟକ୍ତ କରିବାକୁ ଭାଷାର ଅଭାବ । ବାସ୍ତବିକ ଭଞ୍ଜ ଜୟନ୍ତୀ ଅନୁଷ୍ଠାନ ପ୍ରାଚୀନ ସାହିତ୍ୟର ଆଲୋଚନାଲାଗି ଯେଉଁ ସୁଦୃଢ଼ ମଞ୍ଚ ସ୍ଥାପନ କରିପାରିଛି, ଉତ୍କଳୀୟ ପରମ୍ପରାଗତ ସଂସ୍କୃତିର ପୂଜାବେଦୀରୂପେ ତାହାକୁ ଜୀବିତ କରି ରଖିବା ପ୍ରତ୍ୟେକ ଓଡ଼ିଆର କର୍ତ୍ତବ୍ୟ ଏବଂ ପୁଣ୍ୟପ୍ରାଣ ଜାତୀୟ କବି ବିଚ୍ଛନ୍ଦବାବୁଙ୍କପ୍ରତି ତାହାହିଁ ହେବ ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ।



( କଟକ ଆକାଶବାଣୀ ସୌଜନ୍ୟରୁ )

# ମୃତ୍ୟୁ ହେ, ତୁମେ କହ ମୋତେ

ଶ୍ରୀ ବଂଶୀଧର ମିଶ୍ର

( ଭୁଜଙ୍ଗ )

ମୃତ୍ୟୁ ହେ ତୁମେ
କହ ମୋତେ
ନ ଆସିଲ ଦୟା ତୁମ ଚିତ୍ତେ ? । ଘୋଷା ।

ବାଣୀ-ବରପୁତ୍ର ନୀରବ ସାଧକ
ଏକାଧାରେ କବି ଭାବୁକ ଲେଖକ
ଲେଖନୀକୁ ରଖି ବୁଜିଦେଲେ ଆଖି
ରହିଗଲା ପୋଥି ଅଧା କେତେ । ୧ ।

ପ୍ରାଚୀ ସଂପାଦନେ ଥିଲେ ନିଜେ ବ୍ରତୀ
ଗଢ଼ିଥିଲେ କେତେ ସାହିତ୍ୟ ସମିତି
ପ୍ରାଚୀନ ସାହିତ୍ୟ ହେଉ ସମୁନ୍ନତ
ଏହି ଲକ୍ଷ୍ୟ ରଖି ମନୋଗତେ । ୨ ।

ଥିଲ ଭଞ୍ଜପ୍ରେମୀ ଭଞ୍ଜ-ଉପାସକ
ଭଞ୍ଜ-ସାହିତ୍ୟର ଥିଲ ଗବେଷକ
ଭୁଲି ଗବେଷଣା ହେଲ ପଥବଣା
ଚାଲିଗଲ ମୃତ୍ୟୁ-ଡାକେ ସତେ । ୩ ।

ତୁମ ଆଦ୍ୟ ଅର୍ଘ୍ୟ 'କବିତା-କୁମୁଦ'
'ଶତପତ୍ର' ପୁଣି ଅମୂଲ୍ୟ ସମ୍ପଦ
ଏ ଜାତିର ହାତେ ଦେଇଗଲ ସତେ
ନ ଭୁଲିବୁ ମନୁ କଦାଚିତେ । ୪ ।

ତୁମ 'ଜାଗରଣ' ବରିଛି ମରଣ
ଶେଷେ ତୁମେ କଲ ତା ପଥ ବରଣ
ଯେଉଁ ଦେଶେ ଯାଅ, ଯେଉଁ ଦେଶେ ଥାଅ
ଝରୁ ପାରିଜାତ ତୁମ ମାଥେ । ୫ ।



# ସାହିତ୍ୟ-ସଂଗଠକ ବିଚ୍ଛନ୍ଦଚରଣ

## ଶ୍ରୀ ରବିନାରାୟଣ ମହାପାତ୍ର

ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଦେହାବସାନ ରାତ୍ରରେ ତାଙ୍କ ଶେଷ ଦର୍ଶନ କଟକ ବଡ଼ଡାକ୍ତର-ଖାନାରେ ସାରି ମୁଁ ଗଭୀର ଚିନ୍ତାମଗ୍ନ ଥିଲି । ସାହିତ୍ୟିକର ସମ୍ମାନ ଯୁଗେ ଯୁଗେ ବୋଧହୁଏ ଏହିପରି । ଗଭୀର ଆସକ୍ତିରେ ବ୍ୟକ୍ତିଗତ ଲାଭକ୍ଷତିପ୍ରତି ଦୃଷ୍ଟି ନ ଦେଇ, ଯେଉଁ ବ୍ୟକ୍ତି ଓଡ଼ିଶାପରି ଏକ ଅନଗ୍ରସର ରାଜ୍ୟରେ "ଭଞ୍ଜଜୟନ୍ତୀ"ପରି ଏକ ସାରସ୍ୱତ ପାର୍ବଣର ପରମ୍ପରା ସୃଷ୍ଟି କରିଦେଇଛନ୍ତି, ସେ ଦେଶର ସାହିତ୍ୟ ସାଧକମାନଙ୍କର ଶତ ଧନ୍ୟବାଦାର୍ହ । ନିଜ ରୁଚିରେ ବ୍ୟକ୍ତିବିଶେଷ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କଲାପରି ସେ ନିଜ ରୁଚି ଓ ଆଦର୍ଶପ୍ରତି ଆନ୍ତରିକତା ପ୍ରଦର୍ଶନ କରିଛନ୍ତି ।

ଦେଶୀ ସାହିତ୍ୟପ୍ରତି ଆମ ଲୋକଙ୍କର ବିଭିନ୍ନ କାରଣରୁ ବିରାଗ । ବ୍ୟାସକବି ଫକୀରମୋହନ "ହାଟବାହୁଡ଼ା" କବିତାରେ ଏ ମର୍ମନ୍ତୁଦ ସତ୍ୟ ପ୍ରକାଶ କରିଛନ୍ତି । ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଧ୍ୱନି ଉଠିଛି; କିନ୍ତୁ ନିଷ୍ଠୁର ସତ୍ୟର କଥା ଏହି ଯେ କବିବର ରାଧାନାଥ ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀରମୋହନ, ବାଗ୍ମୀ ବିଶ୍ୱନାଥ ତତ୍‌କାଳୀନ ଓଡ଼ିଆ ସାହିତ୍ୟର ଗୁରୁ ହିରପାଳ ହେଲେ ମଧ୍ୟ ତାଙ୍କ ଉତ୍ତରାଧିକାରୀମାନେ ଅଧୁନା ବଙ୍ଗଭାଷୀ । ପୁଣି ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହର ଯେ ସମୟରେ ବଙ୍ଗ-ସରସ୍ୱତୀଙ୍କ ବୀଣାର ଝଙ୍କାରରେ ଧ୍ୱନିତ ହେଉଥିଲା ।

ନୂତନତା ନାମରେ ଯୁଗ ସୃଷ୍ଟି କରିବା ଲୋଭରେ ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷିତ ତରୁଣମାନେ 'ହନୁକରଣ' କରି ମୌଳିକ ସାହିତ୍ୟର ମୋହରି ମାରି ବୁଲିଲେ । ବିନା ସାଧନାରେ କବିଯଶର ମୃଗତୃଷ୍ଣା ସେମାନଙ୍କୁ ଜ୍ଞାନଶୂନ୍ୟ କରିଥିଲା । ଓଡ଼ିଶାର ମାଟିରେ ଅଣଓଡ଼ିଆ ପରମ୍ପରାର ବୀଜବପନ ହେଲା । ଜାତିର ପରମ୍ପରା ମୂଳରେ କୁଠାରାଘାତ କରି, ଓଡ଼ିଶାକୁ ଉପହାସର ନୈଶ ସଂସଦରେ ପରିଣତ କରାଗଲା ।

ଏ ସମସ୍ୟାର ସମାଧାନ କରିବାକୁ ହେବ . ଉତ୍କଳଗୌରବ ମଧୁସୂଦନ ତାଙ୍କର ସ୍ୱଳ୍ପ ସାହିତ୍ୟ-ସୃଷ୍ଟିରେ ଗଭୀର ଆବେଗ ସହିତ ଓଡ଼ିଆର ପ୍ରାଣକୁ ସ୍ପନ୍ଦିତ କରିଗଲେ । ସତ୍ୟବାଦୀର ସାଧକଗୋଷ୍ଠୀ ଆତ୍ମପ୍ରତ୍ୟୟ ସୃଷ୍ଟି କରିବାକୁ ସାହିତ୍ୟକୁ ଜନାଶ୍ରୟ କରିଗଲେ । ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ନୂତନ ମନ୍ତ୍ର ଉଚ୍ଚାରଣ କରି ଆତ୍ମବଳିଦାନର ଗାଥା ଲିପିବଦ୍ଧ କଲେ ।

ଏ ସମସ୍ତ ସାହିତ୍ୟ-ପରୀକ୍ଷାର ଉତ୍ତରସାଧକରୂପେ ଗଭୀର ନିଷ୍ଠା ଓ ଆତ୍ମବିଶ୍ୱାସରେ ସାହିତ୍ୟ ସଂଗଠକ ବିଚ୍ଛନ୍ଦଚରଣଙ୍କ ଭୂମିକା । ସେ ସମଧିକ ସାହିତ୍ୟ ସୃଷ୍ଟି କରିନାହାନ୍ତି ସତ୍ୟ; କିନ୍ତୁ ସାହିତ୍ୟ ବାୟୁ-ମଣ୍ଡଳ ସୃଷ୍ଟିରେ ତାଙ୍କ ସାଧନା ଆଜି ବିଚାରର କରିବାର କଥା । ପ୍ରାଚୀନ ସାହିତ୍ୟର ସମୀକ୍ଷାପାଇଁ ପ୍ରତିଷ୍ଠିତ ପ୍ରାଚୀ ସମିତିର ଅନ୍ୟତମ ସଂଗଠକରୂପେ ସେ ସମାଲୋଚନା ସାହିତ୍ୟପାଇଁ କ୍ଷେତ୍ର ପ୍ରସ୍ତୁତ କରିଛନ୍ତି । ଉତ୍କଳ ସାହିତ୍ୟ-ସମାଜର ଅନ୍ୟତମ କର୍ମକର୍ତ୍ତା ହିସାବରେ ସେ ତତ୍‌କାଳୀନ ସାରସ୍ୱତ ମହୋତ୍ସବର ଜଣେ ମୁଖ୍ୟ କର୍ମୀ ।

ଇଂରାଜୀ ସାହିତ୍ୟରେ ଗଭୀର ପାଣ୍ଡିତ୍ୟ, ସଂଗଠନ କ୍ଷେତ୍ରରେ ବିଭିନ୍ନ ଅଭିଜ୍ଞତାକୁ ପାଥେୟ କରି ସେ

"କଳିଙ୍ଗ-ଭାରତୀ" ଅନୁଷ୍ଠାନ ସ୍ଥାପନ କଲେ । ଓଡ଼ିଶାର ଗୌରବମୟ ଅତୀତର ଅନବଦ୍ୟ ଇତିହାସ ହେଉଛି କଳିଙ୍ଗ । ସେ ଓଡ଼ିଆ ସାହିତ୍ୟର ବିକାଶପାଇଁ ପ୍ରାଣକେନ୍ଦ୍ରରୂପେ କବିସାର୍ବଭୌମ ଉପେନ୍ଦ୍ରଭଞ୍ଜଙ୍କୁ ସ୍ୱୀକାର କଲି । ଉପେନ୍ଦ୍ରଭଞ୍ଜଙ୍କୁ କେନ୍ଦ୍ର କରି ସେ ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଲୋଚନା ଗୋଷ୍ଠୀଗତଭାବରେ କଲେ । ବହୁ ଅପ୍ରକାଶିତ କାବ୍ୟ ପ୍ରକାଶ ପାଇଲା । ରାଜକୀୟ ଆଡ଼ମ୍ବରରେ ସାରସ୍ୱତ ଉତ୍ସବ ଏକସପ୍ତାହବ୍ୟାପୀ ପାଳିତ ହେଲା । ବିଭିନ୍ନ କ୍ଷେତ୍ରରୁ ସାହିତ୍ୟ ଅନୁରାଗୀମାନେ କଳିଙ୍ଗ-ଭାରତୀ ପୀଠରେ ସମାଲୋଚନା ସାହିତ୍ୟର ବିକାଶରେ ଅଂଶ ଗ୍ରହଣ କଲେ । ଦୀର୍ଘ ବହୁ ବର୍ଷଧରି ଓଡ଼ିଶାର ପୁରପଲ୍ଲୀରେ ଏହି ସାରସ୍ୱତ ଉତ୍ସବ ପାଳିତ ହୋଇ ଆସୁଛି ।

'କଳିଙ୍ଗ-ଭାରତୀ" ପୀଠରେ ସାହିତ୍ୟର ବିକାଶପାଇଁ ଏ ଅଭିନବ ପରୀକ୍ଷାରେ ଅନେକ ସାହିତ୍ୟସାଧକ ଆତଙ୍କିତ ହେଲେ । ପ୍ରତିଷ୍ଠା ହ୍ରାସର ଆଶଙ୍କାରେ ନାନା ନୀଚ ସ୍ତରର ସମାଲୋଚନା ହେଲା; କିନ୍ତୁ ଥରେ କଥୋପକଥନରେ ବିଞ୍ଛନିଧିଚରଣ କହିଲେ ଯେ "ପ୍ରତିବେଶୀ ବଙ୍ଗ-ସାହିତ୍ୟ ମୁଦ୍ରାଯନ୍ତ୍ର ଓ ବିଦେଶୀ ଶିକ୍ଷାର ପ୍ରଭାବରେ, ନାନା ରାଜନୈତିକ ଘଟଣାର ପୃଷ୍ଠଭୂମିରେ ଅସଂଖ୍ୟ ପୁସ୍ତକ ପ୍ରକାଶ କରି ଆସିଛି । କିନ୍ତୁ କୃତ୍ତିବାସ ଓଝାଙ୍କ ରାମାୟଣ ବଙ୍ଗଦେଶରେ ଏକମାତ୍ର ରାମ-ସାହିତ୍ୟ ଥିଲାବେଳେ, ଓଡ଼ିଶାରେ ଅସଂଖ୍ୟ ରାମାୟଣ ପ୍ରଚଳିତ ଥିଲା । ତେଣୁ କ୍ଷେତ୍ରପାଇଁ ଶକ୍ତି ସେଯୁଗର ସାହିତ୍ୟରୁ ଆହରଣ କରାଯିବା ସଙ୍ଗତ ।"

ଏ ଦିଗରୁ ବିଚାର କଲେ ବିଞ୍ଛନିଧିଚରଣ ଜଣେ ଦକ୍ଷ ସାଧକ । ଉପସ୍ଥିତ ସୁଯୋଗର ସେ ପୂର୍ଣ୍ଣ ସଦ୍‌ବ୍ୟବହାର କରିଛନ୍ତି । ଏକ ଦିଗରେ 'ଭଞ୍ଜ-ଜୟନ୍ତୀ' ଓ ଅପର ଦିଗରେ 'ବିଷୁବ-ମିଳନ'ର ଆଲୋକରେ କଟକ ସହରରୁ ରବୀନ୍ଦ୍ର ଜୟନ୍ତୀ ଓ ବଙ୍ଗୀୟ ନବ ବର୍ଷର ଚଳେ ଚଳେ ବଙ୍ଗ-ସରସ୍ୱତୀଙ୍କ ଉଜ୍ଜ୍ୱଳ ହୀରାମଣି ନିଷ୍ପ୍ରଭ ହୋଇଗଲା । ଏହାର ନିରପେକ୍ଷ ଆଲୋଚନା ହୋଇ ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ଲିପିବଦ୍ଧ ହେଲେ, ବିଞ୍ଛନିଧିଙ୍କ ସଂଗଠନ-ଶକ୍ତି ସମ୍ପର୍କରେ ପୂର୍ଣ୍ଣ ଆଲୋକପାତ କରିହେବ ।

ସାହିତ୍ୟକ୍ଷେତ୍ରର ସୃଷ୍ଟି ସହଜସାଧ୍ୟ ହୋଇପାରେ; କିନ୍ତୁ ସ୍ଥିତି କଷ୍ଟସାଧ୍ୟ ନିଶ୍ଚୟ । ତେଣୁ ପ୍ରାଚୀ ସମିତି ଓଡ଼ିଆ-ସାହିତ୍ୟ-ପରିଷଦ ପରି ଅନୁଷ୍ଠାନ ବିପୁଳ ଆୟୋଜନରେ ଆରମ୍ଭ ହୋଇ ବର୍ତ୍ତମାନ ନିଶ୍ଚିହ୍ନ । ବିନା ଆନ୍ତରିକତାରେ କ୍ଷେତ୍ରର ସୁରକ୍ଷା ଅସମ୍ଭବ । ତେଣୁ ଏକନିଷ୍ଠଭାବରେ ବିଞ୍ଛନିଧିଚରଣ ଉଚ୍ଚଶିକ୍ଷିତ ଯୁବକମାନଙ୍କ ସମାବେଶରେ ଦୀର୍ଘ ବହୁବର୍ଷ ଯେ ସାଧନା କରିଯାଇଛନ୍ତି, ତାହା କାଳମଗାରେକେ ଉଡ଼ାଇ ନ ପାରେ ।

ଏ ଯୁଗର ଦୃଷ୍ଟିକୋଣରୁ ଭଞ୍ଜକବିଙ୍କ ସାହିତ୍ୟର ମୂଲ୍ୟବୋଧ କମିଯାଇପାରେ; କିନ୍ତୁ ସେଯୁଗର କବି କବିସୂର୍ଯ୍ୟ, ଦୀନକୃଷ୍ଣ ପ୍ରମୁଖ ସ୍ୱଲେଖାମାରେ ଉତ୍କଳ-ସରସ୍ୱତୀଙ୍କ ପାବଣ ପାଳନ କରିଆସିଛନ୍ତି, ସେମାନେ ଓଡ଼ିଆ ସାହିତ୍ୟକର ପିତା ପ୍ରପିତାମହ । ତାଙ୍କ ସାଧନାପ୍ରତି ସମ୍ମାନ ଆବଶ୍ୟକ ।

ତେଣୁ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନୁଶୀଳନ-ପାଇଁ ବିପୁଳ ତ୍ୟାଗ ଓ ସମ୍ବଳ ବିନିମୟରେ ବିଞ୍ଛନି ଏକ ସୁରମ୍ୟ କ୍ଷେତ୍ର ପ୍ରସ୍ତୁତ କରିଯାଇଛନ୍ତି । ବର୍ତ୍ତମାନ ସେ କ୍ଷେତ୍ର ଏକ ଜାତୀୟ ଅନୁଷ୍ଠାନ । ମୂଳରୁ ବିଚ୍ୟୁତ ନ ହୋଇ ସମସ୍ତଙ୍କ ଅକୁଣ୍ଠ ସହଯୋଗର ବିନିମୟରେ ସେ କ୍ଷେତ୍ରରେ ପ୍ରାଚୀନ ସାହିତ୍ୟର ବୈଜ୍ଞାନିକ ବିଶ୍ଳେଷଣ ହେବା ଆବଶ୍ୟକ । କୌଣସି ଅନୁଷ୍ଠାନ ସହିତ ସମ୍ପର୍କ ରଖି ତାର 'ପରମ୍ପରା' ମୂଳରେ କୁଠାରାଘାତ କରିବା ପୁରୁଷାର୍ଥ ହୋଇପାରେ; କିନ୍ତୁ ଜାତୀୟ ବିରୋଧୀକାର୍ଯ୍ୟ ନିଶ୍ଚୟ । ସେଦୃଷ୍ଟିରୁ ସ୍ୱର୍ଗୀୟ

ବିଚ୍ଛନ୍ଦଚରଣଙ୍କ କର୍ତ୍ତବ୍ୟନିଷ୍ଠାପ୍ରତି ଶ୍ରଦ୍ଧା ଜ୍ଞାପନ କରିବାକୁ ସେ ଅନୁଷ୍ଠାନର ଉତ୍ତରୋତ୍ତର ବିକାଶ ହେବା ଆବଶ୍ୟକ ।

ଓଡ଼ିଆ ସାହିତ୍ୟର ଇତିହାସ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ସମାହାର । ପ୍ରାଚୀନ ସାହିତ୍ୟ ପାଇଁ କ୍ଷେତ୍ର ପ୍ରତିଷ୍ଠିତ । ବର୍ତ୍ତମାନ ଆଧୁନିକ ସାହିତ୍ୟର ଚର୍ଚ୍ଚାପାଇଁ ବିଚ୍ଛନ୍ଦଚରଣଙ୍କପରି ନିଷ୍ଠାବାନ ସାହିତ୍ୟିକ ବ୍ୟକ୍ତିତ୍ୱ ଓ ଏକ ସୁରମ୍ୟ କ୍ଷେତ୍ର ପ୍ରତିଷ୍ଠିତ ହୋଇପାରିଲେ ଓଡ଼ିଆ ସାହିତ୍ୟ ସ୍ୱବିଭବରେ ଅଚିରେ ବିଶ୍ୱସାହିତ୍ୟ ଦରବାରରେ ସମ୍ମାନିତ ହେବ । ସେଥିପାଇଁ ସଂସ୍କୃତ କବିଙ୍କୁ ଅନୁସରଣ କରି ଏହି ସାହିତ୍ୟସାଧକ ଉତ୍କଳ-ସରସ୍ୱତୀଙ୍କ ସିଂହାସନ ନିକଟରେ ପ୍ରାର୍ଥନା କରୁଛି—"ନିଃଶେଷ ଜାଡ୍ୟାପହା"—ଜାଡ୍ୟଗ୍ରବର ବିନାଶରେ କଳା ଓ ସଂସ୍କୃତିପ୍ରାଣ ଓଡ଼ିଆ ଆଜି ନୂତନ ସ୍ୱାକ୍ଷରର ଅଧିକାରୀ ହେଉ । ସାରସ୍ୱତ-ରାଜ୍ୟ ଶାନ୍ତିମୟ—ହିଂସା, ମତ୍ସରୀର ସ୍ଥାନ ନାହିଁ । ସରସ୍ୱତୀଙ୍କ ପ୍ରେରଣାରେ ଏ ଜାତି ନବଜୀବନ ଲାଭ କରୁ; "କଳିଙ୍ଗ-ଭାରତୀ"ର ଜୟ ହେଉ ।



# ପୁଣ୍ୟଶ୍ଳୋକ

## ଶ୍ରୀ ଦେବେନ୍ଦ୍ରନାଥ ମହାପାତ୍ର

ହଜି ଯାହା ଯାଉଥିଲା ବହୁ ଦିନ ବହୁ ଦିନ ଧରି
ଲିଭି ଯାହା ଆସୁଥିଲା ତେଲ ବିନା ଦୀପଶିଖା ପରି,
ଲୁଚି ଯାହା ଯାଉଥିଲା ବିସ୍ମୃତିର ବାଲୁଚର ତଳେ
ପୋଡ଼ି ଯାହା ଯାଉଥିଲା ସମୟର କ୍ରୂର ଚିତାନଳେ,
ରକ୍ଷାକଲା ଆସି ଜଣେ । ଆଜି ସେ ବହୁ ଦୂର ପଥେ
ବୀଣା ତାର ବନ୍ଦ ଆଜି, ଆଉ ବାଜେନାହିଁ ସାହାନାଇ,
ପୋଥିସବୁ ପୋକ କାଟେ, ସାଲବେଗ ଜଣାଣଟା ହଜେ
ଆମେ ଖାଲି ତାକୁ ଖୋଜୁ, ସିଏ ସତେ ବହୁଦୂରେ କାହିଁ ?
ବିଚ୍ଛିନ୍ନ, ସେ ବହୁ ଛନ୍ଦେ ଏ ଜାତିର ଗାଉଥିଲା ଗୀତ
'ଭାରତୀର ସେବାପାଇଁ' ପଙ୍ଗୁ ହୋଇ ଲଙ୍ଘିଥିଲା ଗିରି,
ନୀରବ ସାଧକ ସିଏ, ଇତିହାସ ନ ଥିଲା ତାହାରି
ଏ ଜାତିର ଇତିହାସେ ସିଏ ଥିଲା ନିଜ ଜୀବ ଧରି ।
ସେତିକି କରିଛି ସିଏ, ସେତିକିରେ ଆଜି ସେ ମହାନ୍
କୃତି ତାର କରୁଥିବ ଏ ଜାତିର ମହାସ୍ମୃତି ଗାନ ।



# ବିଚ୍ଛନ୍ଦ-ଦ୍ରଷ୍ଟା

## ଶ୍ରୀମତୀ ସରଳା ଦେବୀ

ଉତ୍କଳ-ସାହିତ୍ୟର କ୍ରମବିକାଶଧାରାକୁ ଏହି ଯୁଗରେ ଯଦି କେହି ବ୍ୟତିକ୍ରମ କରିବାର ସ୍ପର୍ଦ୍ଧା ରଖିଥାଆନ୍ତି, ତେବେ ସେହି ବ୍ୟକ୍ତିଙ୍କୁ ବିଚ୍ଛନ୍ଦଚରଣ ପ୍ରଚ୍ଛନ୍ନାୟକ ବୋଲି କୁହାଯିବ । ଉତ୍କଳ-ସାହିତ୍ୟରେ ସବୁଜ-ଯୁଗର ଧାରାକୁ ବ୍ୟାହତ କରିବାପାଇଁ ଅସୀମ ସାହସ ନେଇ ଛିଡ଼ାହୋଇଥିଲେ ବିଚ୍ଛନ୍ଦଚରଣ । ଉତ୍କଳ-ସାହିତ୍ୟ-ସମାଜରେ ସେ ଯେତେବେଳେ ସହକାରୀ ସମ୍ପାଦକ ଥିଲେ, ମୁଁ ସେତେବେଳେ ଥିଲି ସମ୍ପାଦିକା । ସେହି ସମୟରେ ତାଙ୍କର କାର୍ଯ୍ୟ ମୁଁ ଦେଖିଛି । ସେ ଚେଷ୍ଟା କରିଥିଲେ, ସାହିତ୍ୟ କ୍ରମବିକାଶର ଦୈନନ୍ଦିନ ଧାରାକୁ ଅତୀତର ପରମ୍ପରା ଭିତ୍ତି ଉପରେ ଗୋଟିଏ ନୂଆ ରୂପାୟନ ଦେବେ । ସେ ପ୍ରାଚୀ-ସମିତିର ସମ୍ପାଦକଭାବରେ ପ୍ରାଚୀ-ପ୍ରେସରେ ଯେତେ କାଳ କାର୍ଯ୍ୟ କରୁଥିଲେ ଓ ପ୍ରାଚୀନ ପୋଥି ସଂକଳନ, ପ୍ରକାଶନ ଓ ସମ୍ପାଦନ କରିଛନ୍ତି, ସେଇ ଦୀର୍ଘ ୩୮ ବର୍ଷ ଭିତରେ ତାଙ୍କ ଅନ୍ତର, ଆଦର୍ଶରେ ପରିବର୍ତ୍ତନ କରି ନିଜର ଆତ୍ମ-ବିଶ୍ୱାସ ଉପରେ ଛିଡ଼ା ହେବାର ପ୍ରେରଣାଲାଭ କରିଥିଲା । ତାଙ୍କର ସ୍ୱଦେଶପ୍ରୀତି ଉତ୍କଳର ଶିଳ୍ପ, ସଙ୍ଗୀତ, ଭାଷା, ଭାବ, ଗ୍ରନ୍ଥ ପ୍ରଭୃତି ଉପରେ ଗଢ଼ିଉଠିଥିଲା । ପ୍ରାଚୀ-ସମିତିର ବହୁ ବହିରେ ସେ ମୁଖବନ୍ଧ ଲେଖି ସମ୍ପାଦନା କରିଥିଲେ । ପ୍ରାଚୀ-ସମିତିରେ ଥିଲାବେଳେ ସେ ଯେଉଁ ସାହିତ୍ୟସାଧନା ଦୀର୍ଘକାଳ ଧରି କରିଥିଲେ, ତାହାର ପ୍ରଭାବ ତାଙ୍କର ଭାବି କାଳର ସାହିତ୍ୟ-ସାଧନାକୁ ଅନୁପ୍ରାଣିତ କରିଥିଲା ।

ଉତ୍କଳ-ସାହିତ୍ୟ-ସମାଜରେ ଥିଲାବେଳେ ତାଙ୍କର ସାହିତ୍ୟ-ପ୍ରକାଶ ଚେଷ୍ଟା ବିଫଳ ହେବାରୁ ସେ "ଉତ୍କଳ-ଗ୍ରାମ-ସାହିତ୍ୟ-ସମାଜ" ପ୍ରତିଷ୍ଠା କରିଥିଲେ ଓ କତିପୟ ଗ୍ରାମଙ୍କୁ ଏ ଢଗରେ ଗଠନ କରାଇ ସେମାନଙ୍କୁ ନବ ପ୍ରବର୍ତ୍ତନା ଦେଇ ଉତ୍କଳ ସାହିତ୍ୟ-ସମାଜର ଶାଖା ଅନୁଷ୍ଠାନ ଗଠନ କରିଥିଲେ ଏବଂ ପରେ ତାହାକୁ ସାହିତ୍ୟ-ସମାଜରୁ ସ୍ୱତନ୍ତ୍ର ଅନୁଷ୍ଠାନ କରି "କଳିଙ୍ଗ-ଭାରତୀ" ନାମ ଦେଇଥିଲେ ।

ସେ କହୁଥିଲେ, "ଏ ଯୁଗରେ ବଙ୍ଗଳା ଓ ଇଂରାଜୀ ସାହିତ୍ୟର ରଚନାରୀତି ଓ ଭାଷାଭାବକୁ ଆପଣମାନେ ଅନୁସରଣ ଓ ଅନୁକରଣ କରି ଓଡ଼ିଶାର ଜାତୀୟ ସାହିତ୍ୟକୁ ମାରିଦେଲେ । ଯେଉଁମାନଙ୍କୁ କବିତା ଲେଖିଆସେ ନାହିଁ, ସେମାନଙ୍କୁ କବି ଓ ଲେଖକ ଆଖ୍ୟା ଦେଲେ । ଏହାଦ୍ୱାରା ଆପଣମାନେ ଦେଶର ସଂସ୍କୃତି, ସଭ୍ୟତା ଓ ସାହିତ୍ୟର ଜାତୀୟ ଧାରାକୁ କବର ଦେଉଛନ୍ତି । ଓଡ଼ିଆପ୍ରାଣରୁ, ଓଡ଼ିଆ ପ୍ରକୃତିରୁ ଯେଉଁ ସାହିତ୍ୟଧାରା ଉଚ୍ଛୁଳୁଛି, ତାକୁ ଘୃଣା କରି ପରୁରିଲେ ନାହିଁ । ଆପଣମାନଙ୍କ ଦଳର ଲୋକେ ଓଡ଼ିଆ-ସାହିତ୍ୟକୁ ବଙ୍ଗ-ସାହିତ୍ୟ କରିସାରିଲେଣି । ଏଇ ଦଳର ଲେଖକଲେଖିକାମାନେ, ଯେଉଁମାନେ ନବଯୁଗର ନବୀନ ସାହିତ୍ୟ ପ୍ରକାଶ କରିବାର ଗର୍ବ ରଖନ୍ତି, ସେହିମାନେ ଓଡ଼ିଶାର ସାହିତ୍ୟ, ଶିଳ୍ପ ଓ ସଂସ୍କୃତିକୁ ତିଳ ତିଳ କରି ହତ୍ୟା କରିଛନ୍ତି । ଆମର ଛିନ୍ନମସ୍ତା ଉତ୍କଳ-ଜନନୀ ଭଳି ଆପଣଙ୍କ ବନ୍ଧୁମାନେ ଓଡ଼ିଆ କବିମାନଙ୍କୁ ପାଶୋରି, ସେମାନଙ୍କ ସରଣୀ ଛାଡ଼ି, କବିତାକୁ ନିରୁପାଧିକଭାବରେ ଖର୍ବ କରି ଗର୍ବ କରୁଛନ୍ତି ଯେ ସେଇମାନଙ୍କ ପ୍ରସାଦରୁ ଓଡ଼ିଆ ଭାଷା ଓ ସାହିତ୍ୟ ବଢ଼ିଯାଉଛି । ଆପଣମାନେ ଛନ୍ଦମୁକ୍ତ, ଉପାଧିମୁକ୍ତ, ବ୍ୟାକରଣ-ଲଘୁଗୁରୁ ବନ୍ଧନହୀନ କବିତା,

ଗଦ୍ୟ-କବିତାର ପୂଜକ । ଏହାଦ୍ୱାରା ବିଚ୍ଛିନ୍ନ ଉତ୍କଳ ଭଳି ଆମର ଜାତୀୟ ସାହିତ୍ୟ ଛିନ୍ନବିଚ୍ଛିନ୍ନ ହୋଇଯାଉଛି । ଏହି ଜାତୀୟ ସାଂସ୍କୃତିକ ପରମ୍ପରା ଯଦି ଓଡ଼ିଆ ସାହିତ୍ୟକୁ ନ ଆସେ, ତେବେ ଆମ ସାହିତ୍ୟ ବର୍ଣ୍ଣ-ସଙ୍କର-ଦୁଷ୍ଟ ହୋଇ, ଲୋକହସା ହୋଇ ମଉଳି ମରିଯିବ । କବିତାରେ ପ୍ରାଚୀନ ପରମ୍ପରା ରକ୍ଷି ଯେଉଁମାନେ ଲେଖୁଛନ୍ତି, ସେମାନେ କବି ହେବାର ଯୋଗ୍ୟତା କି ନିପୁଣତା ରଖନ୍ତି ନାହିଁ—ସେମାନଙ୍କର କବିତାଶୈଳୀ ଓ ଭାବାଦର୍ଶକୁ ଏ ଜାତି ଗ୍ରହଣ କରିବ କିପରି ? ସେହି କାରଣରୁ "ଗ୍ରନ୍ଥ-ସାହିତ୍ୟ-ସମାଜ"କୁ ନୂତନ ଆଭିମୁଖ୍ୟ ଦେଇ ଗଢ଼ିବାର କଳ୍ପନା କରିଛି ମୁଁ ।"

ତାଙ୍କର ଏହି ଅଦମ୍ୟ ପରିକଳ୍ପନାର ମୂର୍ତ୍ତି ପ୍ରତୀକ-ରୂପେ ଯୁଗାଧିକ କାଳଧରି ଚଳିଆସିଛି 'ଭଞ୍ଜ-ଜୟନ୍ତୀ' । ଏହା ହୋଇଥିଲା ବଙ୍ଗଳା ସାହିତ୍ୟର ଭାବଭାଷା-ଶୈଳୀର ଆଧିକ୍ୟ ଉତ୍କଳ ସାହିତ୍ୟରେ ରୋକିବାପାଇଁ । ବିଚ୍ଛନ୍ଦବାବୁ ଓଡ଼ିଶାରେ ଉତ୍କଳଜାତି ଓ ଉତ୍କଳପ୍ରକୃତି ତଥା ସାହିତ୍ୟ-ସଂସ୍କୃତିର ଖାଣ୍ଟି ପୂଜାରୀ ଥିଲେ । ମାତ୍ର ତାଙ୍କ ଭାଷଣ ଓ ଲେଖାରେ ସାହିତ୍ୟର (New Orientation) ନୂତନ ଆଭିମୁଖ୍ୟ ଜାତିଚରିତ୍ରରେ ତୀକ୍ଷ୍ଣ ଓ ତୀବ୍ର ପ୍ରଭାବପାତ କରିବାରେ ଅସମର୍ଥ ହେବାରୁ ସେ "ଭଞ୍ଜ-ଜୟନ୍ତୀ" ଅନୁଷ୍ଠାନ ଉତ୍କଳର ପୁରପଲ୍ଲୀରେ ପ୍ରତିଷ୍ଠା କରିଥିଲେ ।

ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ଦିଗରେ ସେ ବହୁ ଚେଷ୍ଟା କରିଥିଲେ ଓ ଡାକ୍ତର ଗୋପାଳଚରଣ ପଟ୍ଟନାୟକ, ଶ୍ରୀ ବିମ୍ବାଧର ପଟ୍ଟନାୟକ, ଶ୍ରୀ ନୃସିଂହ ଚରଣ ମହାନ୍ତି ପ୍ରମୁଖଙ୍କୁ ଧରି ଗୋଟିଏ ଉତ୍କଳ ଦେଶ-ମିଶ୍ରଣ ସଂଘ ପ୍ରତିଷ୍ଠା କରିଥିଲେ । ସେହି ସଂଘ ବା ପରିଷଦ ତରଫରୁ ଉତ୍କଳୀୟ ଯୁବକଗଣ, ଓଡ଼ନେଲ କମିଟୀ ମେଦିନୀପୁର ଓଡ଼ିଆଙ୍କଠାରୁ ସାକ୍ଷ୍ୟନେବାକୁ ଯିବାଆଗରୁ ସେ ପ୍ରଧାନ ଉଦ୍ୟୋକ୍ତାଭାବରେ ଉତ୍କଳୀୟ ଛାତ୍ର ଯୁବକମାନଙ୍କୁ ମେଦିନୀପୁର ଯିବାକୁ ପ୍ରେରଣା ଦେଇ ପଠାଇଥିଲେ । ଉତ୍କଳ-ସମ୍ମିଳନୀ, ଦେଶମିଶ୍ରଣ, ଉତ୍କଳ ପ୍ରାଚୀନ ସାହିତ୍ୟର କୃଷ୍ଟି ଓ ଶୈଳୀକୁ ତଥା ପ୍ରାଚୀନ ପରମ୍ପରାକୁ ଅବ୍ୟାହତ ରଖିବାପାଇଁ ତାଙ୍କର ଅଦମ୍ୟ ଚେଷ୍ଟା ତାଙ୍କର ଅତ୍ୟନ୍ତ ସ୍ପଷ୍ଟବାଦିତା ତଥା ନିର୍ଭୀକ ବଳିଷ୍ଠ ବ୍ୟକ୍ତିତ୍ୱର ପ୍ରକାଶ ସମସ୍ତଙ୍କ ପ୍ରାଣରେ ଅତ୍ୟନ୍ତ ଉତ୍ସାହ ପ୍ରଦାନ କରିଥିଲା ।

ସେ ଆଗେ ଟିଉସନ କରୁଥିଲେ; ପରେ କିନ୍ତୁ ଓକିଲାତି ପାସ୍ କରି ବ୍ୟବସାୟରେ ପଶି କିଛି ନ ହେବାରୁ ପୁଣି ଚାକିରି କରିବାକୁ ଇଚ୍ଛା କଲେ । ପାରଳାରାଜାଙ୍କୁ କହି ବୋଲି ତାଙ୍କୁ ବ୍ୟର୍ଥ ଓକିଲାତିରୁ ନିବର୍ତ୍ତାଇ ଟ୍ରାନ୍ସଲେଟର ଚାକିରି କରାଇ ଦେଇଥିଲା । ପରେ ପୁଣି ତାଙ୍କୁ ସରକାରୀ ପ୍ରଚ୍ଛର ବିଭାଗରେ ଚାକିରି ଦିଆଗଲା ।

ପ୍ରାଚୀ ସମିତିର ସମ୍ପାଦକ ଓ ପ୍ରାଚୀ ପ୍ରେସର ମେନେଜର ଥିଲାବେଳେ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମସ୍ତପ୍ରକାର ତତ୍ତ୍ୱବିଧାନ ଭିତରେ ବିଚ୍ଛନ୍ଦବାବୁ କାର୍ଯ୍ୟ କରୁଥିଲେ । ତାହାପରେ ସେ କେତେ ବର୍ଷ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ହାତୁଡ଼ରେ ପଡ଼ିଲେ । ତାଙ୍କର ଭାଷାକୋଷ ଲେଖିବା ଓ ଉଦ୍ଧାରିବା ତଥା ସଂପାଦନାପାଇଁ ବିଚ୍ଛନ୍ଦବାବୁ ସେଠି ଚାକିରି କରିଥିଲେ ।

ସେ ରାଜନୀତିକ ଥିଲେ; କିନ୍ତୁ ତାଙ୍କର ରାଜନୀତି ଭିନ୍ନ ଧରଣର । ଉତ୍କଳ ଦେଶମିଶ୍ରଣ, ବିଚ୍ଛିନ୍ନ ଉତ୍କଳ ଏକତ୍ରୀକରଣ, ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ହିନ୍ଦୀ ତେଲୁଗୁ ପାଠପଢ଼ା ନ ହୋଇ ଓଡ଼ିଆ-ପିଲେ ଓଡ଼ିଆ ପଢ଼ି ଓଡ଼ିଶା ଦେଶର ସଂସ୍କୃତି ବଜାୟ ରଖନ୍ତୁ, ଏହାହିଁ ଥିଲା ତାଙ୍କର ରାଜନୀତିକ ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ସେ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନର ତୀବ୍ର ବିରୋଧୀ ଥିଲେ । ଇଂରେଜ ସରକାରଙ୍କୁ ଆବେଦନ ନିବେଦନ କରି ଦେଶମିଶ୍ରଣ ନ କଲେ ଓଡ଼ିଆ ଜାତି ମରିଯିବ, ଓଡ଼ିଆ ଜାତି ଧରାପୃଷ୍ଠରୁ ଲୋପ ହେବ—ଏହା

ତାଙ୍କର ବିଶ୍ୱାସ ଥିଲା । ନବଉତ୍କଳର ନିର୍ମାତା ମଧୁବାବୁଙ୍କ ରାଜନୀତିକ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ସେ ପସନ୍ଦ କରୁଥିଲେ । ସେ କହୁଥିଲେ; ଆଗେ ଆମ ଘର ସଜାଡ଼ା ହେଉ । ଏକ ଜାତି, ଏକ ଭାଷାରୂପେ ଆମେ ଠିଆହେଲେ ପରେ ଯାଇ ଭାରତର ସ୍ୱାଧୀନତା କ ସ୍ୱରାଜ୍ୟରେ ଭାଗ ନେବା । ଇଂରେଜଙ୍କ ଛଡ଼ା, ଇଂରେଜଙ୍କ ଅନ୍ତେ ଆମ ପଡ଼ୋଶୀ ପ୍ରଦେଶମାନେ ଓଡ଼ିଆଙ୍କୁ କଦାପି ରାଜ୍ୟ ଦେବେ ନାହିଁ । ତେଣୁ ଇଂରେଜମାନେ ଥିଲେ,ହେଲେ ଓଡ଼ିଆ ଜାତିର ଗୁହାରି ଶୁଣି ପ୍ରତିକାର କରିବେ । ସେଥିପାଇଁ କଂଗ୍ରେସ କର୍ମରେ ମିଶୁଥିବା ଯୁବକମାନଙ୍କୁ ସେ ପସନ୍ଦ କରୁ ନ ଥିଲେ । ୧୯୨୧ ଓ ୧୯୩୦ର ସ୍କୁଲ-କଲେଜ ବର୍ଜନ ଆନ୍ଦୋଳନରେ ଛାତ୍ରମାନଙ୍କର ସ୍କୁଲ ଓ କଲେଜ ବର୍ଜନକୁ ସେ ବଡ଼ ଘୃଣା କରୁଥିଲେ ।

"ବିଚ୍ଛନ୍ଦ-ତୃଷ୍ଣା" ବୋଲି ଲେଖାର ନାମ ଦେଇଛି । ବିଚ୍ଛନ୍ଦବାବୁଙ୍କ ସ୍ମୃତି ଲେଖି ଏ ପ୍ରବନ୍ଧ ଶେଷ କରିବା କଥା, ମାତ୍ର ବିଚ୍ଛନ୍ଦବାବୁଙ୍କର ତୃଷ୍ଣା କଅଣ ଥିଲା ?

ବିଚ୍ଛନ୍ଦବାବୁ ପ୍ରାଚୀ ସମିତିରେ ଓ ପ୍ରେସରେ ଚାକିରି କରୁଥିବାବେଳେ ପ୍ରାଚୀ ପ୍ରେସରେ ସୁନ୍ଦର ଗୋଟିଏ ତ୍ରିଭଙ୍ଗିମ କୃଷ୍ଣଛବି ଟାଙ୍ଗି ରଖିଥିଲେ । ସେ ବିବାହ କରିସାରିବାପରେ ତାଙ୍କ ବସାରେ ଦେଖିଲି ସେ କୃଷ୍ଣମୂର୍ତ୍ତି ଫଟୋଟି ଖଟୁଲିରେ ରହି ତାଙ୍କଦ୍ୱାରା ଓ ତାଙ୍କ ସ୍ତ୍ରୀଙ୍କଦ୍ୱାରା ପୂଜିତ ହେଉଛନ୍ତି । ବିଚ୍ଛନ୍ଦବାବୁ କୃଷ୍ଣଗୀତ ଗାଉଥିଲେ । କୃଷ୍ଣଙ୍କୁ ଧୂପଦୀପ ଭୋଗ ଦେଇ ପୂଜୁଥିଲେ ଓ ବ୍ରଜବାସୀ ବାବାଜୀ ବୈଷ୍ଣବଚରଣ ଦାସଙ୍କଠାରୁ ଦୀକ୍ଷା ନେଇଥିଲେ ।

ଏବେ କେତେ ବର୍ଷଧରି ଦେଖିଲି, କୃଷ୍ଣ ଫଟୋ-ପୂଜା ନାହିଁ; କୃଷ୍ଣଭକ୍ତ କ କୃଷ୍ଣଗୀତ ଗାଇବା ନାହିଁ । କୃଷ୍ଣଙ୍କ ସ୍ଥାନରେ ରାମଚନ୍ଦ୍ର ପୂଜା ପାଇଲେଣି । ସେଥିପାଇଁ ସେ ତୁଳସୀ ଦାସ ଅନୁବାଦ କରୁଛନ୍ତି ବୋଲି କହିଲେ । ତୁଳସୀ ଦାସ ରାମାୟଣରେ ତାଙ୍କର ଭକ୍ତି ଓ ଶ୍ରଦ୍ଧା ଦେଖି ମୁଁ ଖୁସିହେଲି ଓ ବିସ୍ମୟରେ ପଚାରିଲି, "ଆପଣଙ୍କ ଇଷ୍ଟଦେବ ଚିରକାଳପୂଜିତ କୃଷ୍ଣଙ୍କୁ ଫିଙ୍ଗିଲେ କାହିଁ ?" ସେ କହିଲେ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପଦେଶରେ ସେ କୃଷ୍ଣଙ୍କୁ ଛାଡ଼ି ଯଥାର୍ଥ ଭଗବାନଙ୍କ ଅବତାର ରାମଙ୍କୁ ପୂଜୁଛନ୍ତି ।" ମୁଁ କହିଲି "ରାମ, ହରି, କୃଷ୍ଣ, ଗୋପାଳ, ଗୋବିନ୍ଦ—ଭଗବାନଙ୍କ ନାମ । ଆପଣଙ୍କର ଏ ବୁଢ଼ାଦିନେ ଭେଦବୁଦ୍ଧି ହେଲା କାହିଁ ?" ସେ କହିଲେ, "ତା ଭଗବାନଙ୍କ ଇଚ୍ଛା ଓ ମୁଁ ଭୁଲ୍ ବାଟରେ ଥିଲି ବୋଲି ସେ ଠିକ୍ ବାଟକୁ ମୋତେ ପୁଣି ଅଣାଇଲେ ।" ମୁଁ ପଚାରିଲି, "ଆପଣଙ୍କର କେଉଁଥିରେ ତୃଷ୍ଣା ରହିଛି ?" ସେ କହିଲେ, "ଲେଖିବାରେ ସାହିତ୍ୟ ପ୍ରକାଶ—ରଚନା-ତୃଷ୍ଣା ସବୁବେଳେ ମୋର ରହିଛି । ସ୍ୱର-ସଙ୍ଗୀତ-ରୂପ-ଭୋଗ, ଯୋଗ-ଧର୍ମକର୍ମ ସବୁଥିରେ ମଣିଷର ତୃଷ୍ଣା ଅଛି; ମୋର ବି ଆସକ୍ତି ତୃଷ୍ଣା ଭରିରହିଛି ।"

ମୁଁ କହିଲି "ଏ ସବୁ ତ ଇନ୍ଦ୍ରିୟ ତୃଷ୍ଣା, ଆପଣଙ୍କର ଅତିନ୍ଦ୍ରିୟ ତୃଷ୍ଣା ମଧ୍ୟ ରହିଛି । ତା' ହେଉଛି ତୁଳସୀ ରାମାୟଣର ଅନୁବାଦ । ଆପଣ ବହୁତ ରଚନା କରିଛନ୍ତି; ପାଣ୍ଡୁଲିପି ଲେଖିଛନ୍ତି । ମୋର ମନେହୁଏ, ଦେବାସୁର ସଂଗ୍ରାମ ସ୍ୱର୍ଗତୃଷ୍ଣାରେ, ଅମୃତମନ୍ଥନ ଅମରତ୍ୱର ତୃଷ୍ଣାରେ, ଦକ୍ଷଯଜ୍ଞ ଶିବଙ୍କ ଅପମାନ ତୃଷ୍ଣାରେ, ଶୁମ୍ଭ-ନିଶୁମ୍ଭଙ୍କ ପତନ ରୂପ-ତୃଷ୍ଣାରେ, ରାମଙ୍କ ବନଗମନ କୈକେୟୀଙ୍କ ରାଜମାତା ହେବା ତୃଷ୍ଣାରେ, ରାବଣର ସବଂଶ ନିଧନ ସୀତାଙ୍କ ରୂପତୃଷ୍ଣାରେ, ମହାଭାରତ ସମର ହେଲା ରାଜ୍ୟ-ତୃଷ୍ଣାରେ—ସବନ୍ତ ହିଁ ତୃଷ୍ଣା । ମନୁଷ୍ୟ-ଜୀବନ ହିଁ ଏକ ତୃଷ୍ଣାର ପ୍ରତିବାଚୀକ ଶବ୍ଦ; ମାତ୍ର ଆପଣଙ୍କ ତୃଷ୍ଣା ଉତ୍କଳର ସର୍ବାଙ୍ଗୀନ ମଙ୍ଗଳ—ଉତ୍କଳର ଏକତ୍ରୀକରଣ ଓ ପ୍ରାଚୀନ ସାହିତ୍ୟ-ସରଣୀର ପରମ୍ପରା ଉଦ୍ଧାର । ଏହାହିଁ ଆପଣଙ୍କ 'ଜୀବନତୃଷ୍ଣା' ।

# ଗାଉଛି ଜୀବନ-ଜୟ

ଶ୍ରୀମତୀ ସ୍ନେହଲତା ମହାନ୍ତି

(୧)

ମୃତ୍ୟୁପରେ ବି ଅସୀମ ପରାଣ ତନ୍ତୁ
ଲୁଟି ନେଉଅଛ ଅନ୍ଧାର ଅଭିଯାନ
ସକଳ ଯାତନା ସକଳ କଷଣ କରିଅଛ ନିଜେ ଚନ୍ଦ୍ର
ଏ ଦେଶ ମାଟିରେ ବାଢ଼ି ଦେଇଅଛ
ସାର୍ଥକ ଅଭିଯାନ ।

(୨)

ସେଥିଲାଗି ଆଜ ଘୋଷଣା କରେ ମୁଁ
ମରଣ ତା ପଦତଳେ
ମାନିନେଇଅଛି ଯୁଗ ଯୁଗ ପରାଜୟ
ଦେହଟା ଯଦିଓ ଶୋଇଛି ତାହାର
ଏଇ ମାଟି ବୁକୁତଳେ
ମନଟା ତାହାର ଗାଉଛି ଜୀବନ-ଜୟ ।



# ବିଚ୍ଛନ୍ଦ କାବ୍ୟକଳା

**ଶ୍ରୀ ବୀରକିଶୋର ଦାସ,** ବି. ଏ., ଏର୍. ଡ଼. ସି.

ଯେତେବେଳେ ବିଦେଶୀ ତଥା ପ୍ରତିବେଶୀ ପ୍ରଦେଶମାନଙ୍କର ପ୍ରଭାବ ଉତ୍କଳୀୟ ସାହିତ୍ୟ ତଥା ସଂସ୍କୃତିକୁ ସମ୍ପୂର୍ଣ୍ଣରୂପେ କବଳିତ କଲା, ସେତେବେଳେ ଓଡ଼ିଶାରେ ଯେଉଁ କେତେଜଣ ଖ୍ୟାତନାମା ମହାପୁରୁଷ ଜନ୍ମଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରୁ ଫକୀରମୋହନଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ଫକୀରମୋହନ ଉଚ୍ଚ ଉପାଧିଧାରୀ ନ ଥିଲେ; ମାତ୍ର ସ୍ୱକୀୟ ଅଲୌକିକ ମେଧା ଓ ଦୂରଦୃଷ୍ଟି ଦ୍ୱାରା 'ଓଡ଼ିଆ-ସାହିତ୍ୟ' ତଥା ସଂସ୍କୃତିକୁ ପ୍ରାଣପଣେ ବଞ୍ଚାଇବାକୁ ଚେଷ୍ଟା କରିଥିଲେ । ସେ ଯଦି ଜନ୍ମ ନ ହୋଇଥାନ୍ତେ, ତାହାହେଲେ ଓଡ଼ିଆ ସାହିତ୍ୟର ସ୍ୱାତନ୍ତ୍ର୍ୟ ଓ ମୌଳିକତା ଆଜି ଆମର ଦୃଷ୍ଟିପଥାରୂଢ଼ ହେଉଥାନ୍ତା କି ନାହିଁ ସନ୍ଦେହ । ପୁନଶ୍ଚ ଫକୀରମୋହନ ସିନା ଜୀବନ୍ୟାସ ଦେଇ ଉତ୍କଳ-ସାହିତ୍ୟକୁ କିଛିକାଳପାଇଁ ପ୍ରତିବେଶୀ-ପ୍ରଭାବରୁ ବଞ୍ଚାଇ ରଖିଲେ; କିନ୍ତୁ ତାଙ୍କର ବ୍ୟକ୍ତିଗତ ଚେଷ୍ଟା ବିଦେଶୀ-ପ୍ରଭାବକୁ ପୂର୍ଣ୍ଣମାତ୍ରାରେ ନିରାକୃତ କରିପାରି ନ ଥିଲା । ରାଜନୀତି-କ୍ଷେତ୍ରରେ ଡେଲହାଉସୀଙ୍କର ସାମ୍ରାଜ୍ୟବାଦ ଯେପରି ସମଗ୍ର ଭାରତକୁ ଇଂରେଜ-ଶାସନାଧୀନ କରିପାରିଥିଲା, ସେହିପରି ଶିକ୍ଷା-କ୍ଷେତ୍ରରେ 'ମ୍ୟାକୁଲେ' ସାହେବଙ୍କଦ୍ୱାରା ପ୍ରଚଳିତ ଶିକ୍ଷା ପଦ୍ଧତି କେବଳ ଉତ୍କଳରେ କାହିଁକି, ସମଗ୍ର ଭାରତର ଶିକ୍ଷା ଓ ସଂସ୍କୃତି-ମୂଳରେ କୁଠାରାଘାତ କରି ଏକ ବିଜାତୀୟ ନୂତନତା ପ୍ରତିଷ୍ଠା କଲା । ଉତ୍କଳ ଇତିହାସରେ ଏହି ସମୟକୁ ଏକ ସନ୍ଧି ସମୟ କହିଲେ ଅତ୍ୟୁକ୍ତି ହେବ ନାହିଁ; କାରଣ କ୍ରମେ କ୍ରମେ ଭଞ୍ଜୀୟ ଅନୁପମ କାବ୍ୟ-ମାଧୁରୀ ଅପସରିଗଲା ଓ ତାର ସ୍ଥାନ ଅଧିକାର କଲା ବିଦେଶୀୟ ଭାବ ଓ ଭାଷା । ଆମର ଅବିକୃତ ତଥା ସମୃଦ୍ଧ ପରମ୍ପରା ତ୍ୟାଗକରି କିଙ୍କର୍ତ୍ତବ୍ୟ ହୋଇ ସାହିତ୍ୟିକମାନେ ଏକ ବିକୃତ ନୂତନତାର ଅନୁଶୀଳନ କଲେ । ତେଣୁ ସ୍ୱତଃ ଉତ୍କଳ ଭାଷାର ନିରଙ୍କୁଶ ବୈଶିଷ୍ଟ୍ୟ ଅବହେଳିତ ହେଲା । ଠିକ୍ ଏହି ସନ୍ଧିମୁହୂର୍ତ୍ତରେ ପୁରୀ ଜିଲ୍ଲା ଖୋର୍ଦ୍ଧା ସବ୍-ଡିଭିଜନ୍‌ର ପ୍ରସିଦ୍ଧ 'ଯାଆଁଳା" ଗ୍ରାମରେ ଏକ ସମ୍ଭ୍ରାନ୍ତ କରଣ କୁଳରେ ଜନ୍ମଗ୍ରହଣ କଲେ କବି ବିଚ୍ଛନ୍ଦଚରଣ । ଇଂରାଜୀ କବି ବାଇରନ୍‌ଙ୍କ ପରି ସେ ବାଲ୍ୟକାଳରୁ ଖଞ୍ଜ ଥିଲେ । ତେଣୁ କବି ସ୍ୱକୃତ 'ତୁଳସୀ ରାମାୟଣ'ରେ ଯଥାର୍ଥରେ ଲେଖିଛନ୍ତି—

> "ଜନ୍ମରୁ ଖଞ୍ଜ ମୋ ପଯ୍ୟର
> ଚାଲିବା ବଡ଼ କଷ୍ଟକର ।"

କଥାରେ କହନ୍ତି, 'ଗୁଣ ଯାହାର, ଗୁଣ ତାହାର'—ଏହି ଉକ୍ତିର ସତ୍ୟତା କବିଙ୍କ ଜୀବନରେ ପ୍ରତିପାଦିତ । ସଂସ୍କୃତ କବି ଭର୍ତ୍ତୃହରି, ଇଂରାଜୀ କବି 'ପୋପ୍'ଙ୍କ ପରି ସେ ଅତି ବାଲ୍ୟକାଳରୁ କବିତାଲେଖା ଆରମ୍ଭ କରିଦେଇଥିଲେ । କବିଙ୍କୁ ଯେତେବେଳେ ଦଶବର୍ଷ, ସେତିକିବେଳେ ତାଙ୍କର କବିତା ଖୋର୍ଦ୍ଧା ଓ ସତ୍ୟବାଦୀ ହାଇସ୍କୁଲର ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ପୁନଶ୍ଚ, ମାଟ୍ରିକ୍ ଚତୁର୍ଥ ଶ୍ରେଣୀରେ କବି ଇଂରାଜୀ-ସାହିତ୍ୟର ବିଖ୍ୟାତ କବି 'ସେକ୍ସପିଅର'ଙ୍କର କଠିନ ତଥା ଭାବମୟୀ କବିତାଗୁଡ଼ିକର ଅବିକୃତ ଅନୁବାଦ କରି ଶିକ୍ଷକ ତଥା ସାହିତ୍ୟିକମାନଙ୍କର ପ୍ରଶଂସାଭାଜନ ହୋଇପାରିଥିଲେ । ଏତଦ୍‌ବ୍ୟତୀତ ଛାତ୍ର ଜୀବନରୁ ମଧ୍ୟ କବିଙ୍କର ଇଂରାଜୀ ସାହିତ୍ୟରେ ବିଶେଷ ଭାବରେ ବିଖିଲ ଥିଲା । ତେଣୁ ସ୍ୱର୍ଗତ ଗୋପାଳଚନ୍ଦ୍ର

ସ୍ୱଦେଶକ କବିଙ୍କର କୃତିତ୍ୱରେ ଏତେ ମୁଗ୍ଧ ହୋଇଥିଲେ ଯେ ସେ କବିଙ୍କୁ ପ୍ରଶଂସାପତ୍ର ଦେଇ ଚିଠିରେ ଲେଖିଥିଲେ, "ବିଚ୍ଛନ୍ଦଚରଣଙ୍କର ଇଂରାଜୀ ଭାଷାରେ ଏତେ ଦଖଲ ଅଛି, ତାହା ଦେଖି ତାଙ୍କପ୍ରତି ମୋର ଈର୍ଷା ହୁଏ ।" ଅତଏବ ଏହି ପଂକ୍ତିରୁ ହିଁ କବିଙ୍କର ପାଣ୍ଡିତ୍ୟ ଅନାୟାସରେ ଅନୁମେୟ । ପୁନଶ୍ଚ ଦାରିଦ୍ର୍ୟ ଓ ପାରିପାର୍ଶ୍ୱିକ ଅଭାବ ଅସୁବିଧା କେବଳ ଓଡ଼ିଆ କବିଙ୍କର କାହିଁକି, ପ୍ରାୟ ପୃଥିବୀର ଅଧିକାଂଶ କବି-ଜୀବନର ଏକ ଅପରିତ୍ୟଜ୍ୟ ଅଧ୍ୟାୟ । ଉଦାହରଣ-ସ୍ୱରୂପ, ଓ୍ୟାର୍ଡ଼ସ୍‌ଓ୍ୟାର୍ଥଙ୍କପରି ବିଶ୍ୱବିଖ୍ୟାତ କବିଙ୍କୁ ଡାକ ଟିକେଟ ବିକ୍ରୟ, 'କିଟ୍‌ସ୍‌'ଙ୍କୁ କମ୍ପାଉଣ୍ଡରୀ, 'ବର୍ନସ୍‌'ଙ୍କୁ କୃଷିକର୍ମ, 'ଗଙ୍ଗାଧର'ଙ୍କୁ ବସ୍ତ୍ର-ବୟନ, 'ଚିନ୍ତାମଣି'ଙ୍କୁ ନିମ୍ନପ୍ରାଥମିକ ସ୍କୁଲର ଶିକ୍ଷକତା ଓ 'ମାଇକେଲ ମଧୁସୂଦନ'ଙ୍କୁ ପୁଞ୍ଜିପତିଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିଛି । ତେଣୁ ବଙ୍ଗଳା କବି ହେମେଣଚନ୍ଦ୍ର ଗାଇଛନ୍ତି—

"ହାୟ ମା ଭାରତି ଚିରକାଲ ତବ
ଏଇ କି କୁଖ୍ୟାତି ରବେ;
ଯେ ସେବିବେ ତୋ ପଦ-କମଳ
ସେଇ ସେ ଦରିଦ୍ର ହବେ ।"

କବି ବିଚ୍ଛନ୍ଦଚରଣ ମଧ୍ୟ ଏହି ଦାରିଦ୍ର୍ୟର କଷାଘାତରୁ ବଞ୍ଚିତ ନ ଥିଲେ । ପାରିବାରିକ ଅସୁବିଧା ବର୍ଣ୍ଣନାତୀତ; ଦାରିଦ୍ର୍ୟ ଓ ଅବିଧୁବିଗତ ବିକୃତି କବି-ଜୀବନକୁ ତିକ୍ତ ଅନୁଭୂତି ବହୁଳ କରିପାରିଥିଲା । ସେହି ଅନୁଭୂତିକୁ ପାଥେୟ କରି କବି ଭାରତୀଙ୍କ ବନ୍ଦୀ ବୀଣାରେ ପ୍ରାଚୀନ ତଥା ନୂତନ ଶୈଳୀସଂଯୋଗରେ ଏକ ଅଭିନବ ସଙ୍ଗୀତ-ମୂର୍ଚ୍ଛନା ତୋଳିବାର ପ୍ରୟାସୀ ହେଲେ । ମୋଟ ଉପରେ କଳିଙ୍ଗ-ଭାରତୀଙ୍କର ମୌଳିକତା ସଂରକ୍ଷଣହେଲା କବିଙ୍କର ପ୍ରଧାନ ତଥା ପ୍ରଥମ ଲକ୍ଷ୍ୟ । ଆଲୋଚନା ପୂର୍ବରୁ ବର୍ତ୍ତମାନ କବିଙ୍କ କବିତାଗୁଡ଼ିକୁ ସ୍ଥୂଳତଃ ଛଅଟି ବିଭାଗରେ ବିଭକ୍ତ କରିପାରିବା; ଯଥା—ଅନୁବାଦାତ୍ମକ, ଜାତୀୟ ଭାବାତ୍ମକ, ଉପଦେଶାତ୍ମକ, ସଂସ୍କାରମୂଳକ, ଅନୁଭୂତିମୂଳକ ଓ ଭକ୍ତିମୂଳକ ।

କବିଙ୍କର ଅନୁବାଦାତ୍ମକ କାବ୍ୟ-କବିତା ମଧ୍ୟରୁ ତୁଳସୀ ଦାସଙ୍କର 'ରାମଚରିତମାନସ' ଅଧୁନା ବିଚାର୍ଯ୍ୟ । ଓଡ଼ିଆ-ସାହିତ୍ୟରେ ବିକ୍ରମଦେବବର୍ମା, ଜଗଦ୍‌ବନ୍ଧୁ ମହାପାତ୍ର ଓ ସ୍ୱପ୍ନେଶ୍ୱର ଦାସଙ୍କଦ୍ୱାରା ଏହି ଗ୍ରନ୍ଥଟି ଅନୂଦିତ ହୋଇଛି; କିନ୍ତୁ ତୁଳନାତ୍ମକ ଦୃଷ୍ଟିକୋଣରୁ ବିଚାର କଲେ ଆମ୍ଭେମାନେ ଦେଖିପାରୁ ଯେ ବିଚ୍ଛନ୍ଦକୃତ ରାମାୟଣରେ ସାହିତ୍ୟିକ ମୂଲ୍ୟ ସ୍ୱତନ୍ତ୍ର; କାରଣ ସମଗ୍ର କାବ୍ୟଟି ନବାକ୍ଷରୀ ବୃତ୍ତରେ ଲିଖିତ ହୋଇଥିବାରୁ ଜଗନ୍ନାଥ ଦାସଙ୍କ ଭାଗବତପରି ସୁଖପାଠ୍ୟ ତଥା ଶାଳୀନତାସମ୍ପନ୍ନ ହୋଇପାରିଅଛି । ପ୍ରକୃତ "ରାମଚରିତମାନସ"ର ଭାଷା -ଯେପରି କଠିନ, ଭାବ ମଧ୍ୟ ସେହିପରି ଅବୋଧ । ପ୍ରମାଣପାଇଁ ନିମ୍ନଲିଖିତ ଉଦାହରଣଟି ପଢ଼ନ୍ତୁ—

"ବ୍ୟାପକ ବ୍ରହ୍ମ ଅଖଣ୍ଡ ଅନନ୍ତା,
ଅଖିଳ ଅମୋଘ ଏକ ବଳବନ୍ତା ।
ଚୋଇ ସଚ୍ଚିଦାନନ୍ଦ ଘନଶ୍ୟାମା,
ଅଜ ବିଜ୍ଞାନ ରୂପଗୁଣଧାମା ।
× × ×
ନିର୍ଗୁଣ ନିରାକାର ନିର୍ମୋହା
ନିତ୍ୟ ନିରଞ୍ଜନ ସୁଖସନ୍ଦୋହା ।"

ଏହି ପଦମାନଙ୍କରେ ଦାର୍ଶନିକ ତତ୍ତ୍ୱ ପୂରିରହି-ଥିବାରୁ ଏହା ସାଧାରଣ ପାଠକଙ୍କର ବୋଧଗମ୍ୟ ହୋଇପାରେ ନାହିଁ; କିନ୍ତୁ ବିଚ୍ଛନ୍ଦଚରଣ ଅଗାଧ ପାଣ୍ଡିତ୍ୟଦ୍ୱାରା ସମଗ୍ର 'ରାମଚରିତମାନସ'କୁ ସରସ ତଥା ସୁରୁଚିସମ୍ପନ୍ନ କରିପାରିଅଛନ୍ତି । ପ୍ରଥମେ କବି ନିଜର ଆରାଧ୍ୟ ଦେବତା ଜଗନ୍ନାଥଙ୍କର ବନ୍ଦନା ଗାଇଅଛନ୍ତି । ତାହା ହେଉଛି—

"କମଳାଦେବୀ ପ୍ରାଣକାନ୍ତ ।
ସାରଦା ଦେବୀ ଚିତ୍ତ-ହିତ ॥

"ଅଶେଷ ବ୍ରହ୍ମାଣ୍ଡ-କରତା ।
ଅଶେଷ ଜନ ପଡ଼-ଦାତା ॥
ମୁଁ ଭବସାଗରେ ଭାସଇ ।
କର କରୁଣା ଭାବଗ୍ରାହୀ ॥
କାମନା - ତରଙ୍ଗେ ତାଡ଼ିତ ।
ହୋଇ ଧାମଇ ଇତସ୍ତତଃ ॥
ଜନ୍ମ-ମରଣ-ଚକ୍ରୁ ମୋର ।
କେବେ ବା ହେବଟି ନସ୍ତାର ॥
ତୋ କୃପା-ନଉକାକୁ ଦେଇ ।
ମୋତେ ତାରିବା ରସ୍ସୁପୋଇ ॥"

ଏହି ପଦମାନଙ୍କରେ କବିଙ୍କର ଜୀବନଦର୍ଶନ ସ୍ପଷ୍ଟ ହୋଇଛି । ଏତଦ୍‌ଭିନ୍ନ ଉତ୍କଳର ମଙ୍ଗଳ କାମନା କରି ଏହି ବରିଷ୍ଠ କାବ୍ୟ-ପ୍ରଣୟନରେ ବ୍ରତୀ ହୋଇଛନ୍ତି ବୋଲି କବି ମଧ୍ୟ କାବ୍ୟର ପ୍ରାରମ୍ଭରେ ଉଲ୍ଲେଖ କରିଅଛନ୍ତି । କବିଙ୍କର ଜୀବନ ଅଭାବ-ଅନଟନର ଏକ ରଙ୍ଗଭୂମି ହୋଇଛି; କିନ୍ତୁ ଭଗବାନ୍‌ଙ୍କର ଅଶେଷ କରୁଣା କବିଙ୍କୁ ଗୌରବର ସର୍ବୋଚ୍ଚ ସୋପାନରେ ଅଧିରୂଢ଼ କରିପାରିଛି । ଉଦାହରଣ ହେଉଛି—

"ମଙ୍ଗଳ ଇଚ୍ଛି କଳିଙ୍ଗର ।
କଲଇ ତାରେ ଭାଷାନ୍ତର ॥
× × ×
ଅଘଟ ଘଟନ ଚତୁର ।
ମୋ ପ୍ରଭୁ ବଇଦେହୀ-ବର ॥
ବହୁତ ସଙ୍କଟୁ ଏସନ ।
ରଖିଲେ ପେଶି ସୁଦର୍ଶନ ॥"

ଏହିପରି ତୁଳସୀ ଦାସଙ୍କ 'ରାମଚରିତମାନସ'କୁ ବହୁ ଭାବରେ ଅନୁକରଣ କରିଥିଲେ ସୁଦ୍ଧା ପ୍ରତି ପଦରେ କବିଙ୍କର ନିରଙ୍କୁଶ ମୌଳିକତା ଅକ୍ଷୁଣ୍ଣ ରହିଛି; କାରଣ ଅନୁକରଣଦ୍ୱାରା, ମୌଳିକତାର ଅଙ୍ଗହାନି ଘଟି ନ ଥାଏ । ତେଣୁ ଇଂରେଜ ସମାଲୋଚକ 'ଷ୍ଟିଫେନ୍‌ସ' କହନ୍ତି—"Imitation does not clip the wings of originality"— ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଏତଦ୍‌ଭିନ୍ନ 'କବିତା କୁସୁମ'ର ବହୁ କବିତା ଇଂରେଜୀ-ଭାଷାରୁ ଅନୂଦିତ ହୋଇ କବିଙ୍କର ଅଦ୍ଭୁତ କବିପାଠବର ସ୍ଥୂଳ ପରିଚୟ ଦେଉଅଛି ।

ବିଶେଷତଃ ଜାତୀୟତା ଦୃଷ୍ଟିରୁ କବିଙ୍କର କବିତା ବିଶ୍ୱର୍ଯ୍ୟ । କବି ଅଧିକାଂଶ କବିତାରେ ସ୍ୱକୀୟ ଉଦ୍ଦାମ ଜାତୀୟତା ପ୍ରକାଶ କରିଥିବାର ଦେଖାଯାଏ । ପାଠକ ଯେତେବେଳେ 'ମୋ ଦେଶ', 'ମା' 'କରୁଣା ନାହିଁ କି ?' 'ଶସ୍ୟଶ୍ୟାମା', 'ଉତ୍କଳ ଚିନ୍ତାମଣି ଚଉତିଶା', 'ସେ ତ ସ୍ୱଦେଶ ମୋହର', 'ବାରବାଟୀ' ଇତ୍ୟାଦି କବିତା ପାଠ କରେ, ସେତେବେଳେ ତା ହୃଦୟ ଦେଶପ୍ରାଣତାର ଉଦ୍ଦାମ ଉଚ୍ଛ୍ୱାସରେ ଭରିଉଠେ ନାହିଁ କି ? ଏତଦ୍‌ବ୍ୟତୀତ କବି ଜୀବନର ପ୍ରାରମ୍ଭରୁ ଦେଶ ଓ ଦଶର ସେବାରେ ନିଜର ଜୀବନ ବିନିଯୋଗ କରିବା-ପାଇଁ ଶପଥ କରିଅଛନ୍ତି—

"ଜନ୍ମଦାତ୍ରୀ, ଧାତ୍ରୀ, ଜନମ-ଭୂଇଁ,
ଜଡ଼-ତାପହାରିଣୀ ପାଦ ତୋ ଛୁଇଁ ।
ଜଗତେ ସାକ୍ଷୀ ରଖି କଲି ଶପଥ,
ଜୀବିତ ସେବାରେ ତୋ ଯିବ ନିଯୁତ ।"

ଏହି କବିତାମାନଙ୍କ ଭାବରେ ପାଠକ ଯେତିକି ବିହ୍ୱଳ ହୁଏ, ଭାଷା-ବିନ୍ୟାସ ଓ ଛନ୍ଦ-ଯୋଜନାରେ ତତୋଽଧିକ ଆମୋଦିତ ହୋଇପଡ଼େ । କାରଣ କବି ଚଉତିଶା ଜରିଆରେ ସ୍ୱକୀୟ ଅନିରୁଦ୍ଧ ଆବେଗ ପ୍ରକାଶ କରିଅଛନ୍ତି । ବତ୍ସା ଦାସଙ୍କର 'କଳସା', ମାର୍କଣ୍ଡ ଦାଶଙ୍କର 'କୋଇଲି' ଯେପରି ସର୍ବଜନାଦୃତ, ବାଞ୍ଛାନିଧିଙ୍କର ଚଉତିଶାଗୁଡ଼ିକ ଠିକ୍ ସେହିପରି ଲୋକପ୍ରିୟ ଓ ସୁଖପାଠ୍ୟ । ଉର୍ଦ୍ଦୁ କବି 'ଏକବାଲ୍' ଜଣେ ଜାତୀୟବାଦୀ କବି ଥିଲେ । ସେ କହୁଥିଲେ, "You think that god lies in your idol. To me every particle of dust of my mother-land is a god !" ଠିକ୍ ଏହିପରି ବାଞ୍ଛାନିଧିଙ୍କର ଜାତୀୟଭାବ ଭକ୍ତିରସ-ଜରିଆରେ ପ୍ରକାଶ ପାଇଛି; ଉଦାହରଣସ୍ୱରୂପ—

"ତହିଁରେ ଜନମ ଲଭି ଧନ୍ୟ ମୋ ଜୀବନ
ସ୍ୱଦେଶର ମାଟି ମୋରେ ପୂଜାର ଚନ୍ଦନ
ପଙ୍କ-ବିଭୂତି ତା ଧୂଳି
ମଣ୍ଡୁଥାଏ ଚିରକାଳ ତାହା ମୋ ମଙ୍ଗଳ ।"

କିନ୍ତୁ କବି ମାତୃଭୂମିର ଅବନତି ଦେଖି ବିଶେଷତଃ ନିଜ ଦେଶରେ ପ୍ରତିଭା-ପୂଜାର ଅବହେଳା ସଂଦର୍ଶନ କରି ଗଭୀର ଦୁଃଖ ପ୍ରକାଶ କରିବାକୁ ଭୁଲି ନାହାନ୍ତି । ଏହି ପ୍ରତିଭାର ଜନ୍ମପୀଠ ଉତ୍କଳରେ ଉପେନ୍ଦ୍ର, ରାଧାନାଥ, ଗୋପବନ୍ଧୁ, ପଠାଣିସାମନ୍ତ ଇତ୍ୟାଦି କବି ଓ ମହାପୁରୁଷ ଜନ୍ମଗ୍ରହଣ କରିଅଛନ୍ତି । କିନ୍ତୁ ତାଙ୍କ ପ୍ରତିଭାର ପୂର୍ଣ୍ଣ ବିକାଶପାଇଁ ଏ ଦେଶ ତାଙ୍କୁ ସୁଯୋଗ ଦେଇ ନାହିଁ, ବରଂ ଅବହେଳା ପ୍ରଦର୍ଶନ କରିଛି । ତେଣୁ କବିଙ୍କ ବ୍ୟଥିତ ପ୍ରାଣ ଗାଇଉଠିଛି—

"ଉତ୍କଳ - ଭାଲପାଇଁ ପଦ୍ମ ବିରଞ୍ଚି,
ଦାରୁଣ ଭାଗ୍ୟଲିପି ଅଛଇ ରଚି ।
ମାଣିକ୍ୟ ଯାଏ ଯେବେ ଚଣ୍ଡାଳ-ସାହି,
ପିଟନ୍ତି ତାକୁ ଗୋରୁହାଡ଼େ ନିଠାଇ ।
× × ×
ତଥା ପ୍ରତିଭା ଭୂମ ପାଇଁ ଏ ଦେଶେ
ପଡ଼ିଲା ଗୁରୁ ଅବହେଳା-ଗରାସେ ।"

ଏହା ବୋଲି ଯେ କବି ନୈରାଶ୍ୟବାଦୀ ହୋଇଛନ୍ତି, ଏହା ଭାବିବା ଭ୍ରମ । ଦେଶବାସୀଙ୍କର ସାମୂହିକ ଚେଷ୍ଟା ଓ ସହଯୋଗ ଦେଶର ପୂର୍ବାବସ୍ଥା ଫେରାଇ ଆଣିବ—ଏହି ବଳବତୀ ଆଶା ଓ ଆକାଂକ୍ଷାରେ କବିଙ୍କର ଅଧିକାଂଶ କବିତା ପରିକଳ୍ପିତ ।

ଏହାପରେ କବିଙ୍କର ଉପଦେଶାତ୍ମକ କବିତା-ଗୁଡ଼ିକ ଆଲୋଚ୍ୟ । ପ୍ରକୃତରେ ଜନସମାଜର ମାନସିକ ପରିବର୍ତ୍ତନପାଇଁ ସାହିତ୍ୟ ହିଁ ହେଉଛି ଏକ ଅମୋଘ ଅସ୍ତ୍ର । କାରଣ ସାହିତ୍ୟ ଶିକ୍ଷିତ ଓ ଅଶିକ୍ଷିତ-ନିର୍ବିଶେଷରେ ସମସ୍ତଙ୍କ ହୃଦୟରେ ଅକ୍ଲେଶରେ ରେଖାପାତ କରିପାରେ । ଉଦାହରଣସ୍ୱରୂପ ସିକନ୍ଦର, ସିଜର, ଅଶୋକ, ନେପୋଲିୟନ୍ ସେମାନଙ୍କର ଶାଣିତ ଅସି ସାହାଯ୍ୟରେ ଯାହା କରି ନ ପାରିଛନ୍ତି, ସେକ୍‌ସପିର, ଦାନ୍ତେ, କାଳିଦାସ, ଉପେନ୍ଦ୍ର, ରବୀନ୍ଦ୍ରନାଥ ଇତ୍ୟାଦି ତତୋଽଧିକ କରିପାରିଅଛନ୍ତି । ଏହି ସାହିତ୍ୟ ଜରିଆରେ ବିଚ୍ଛନ୍ଦଚରଣ ମଧ୍ୟ ଭ୍ରମପ୍ରମାଦପୂର୍ଣ୍ଣ ସମାଜ ଆଗରେ ତାଙ୍କର ଉପଦେଶ ବାଢ଼ିବାକୁ ଭୁଲିନାହାନ୍ତି ।

"ସତ୍ୟବାଦୀସମ କେହି ନାହିଁ ଭୟହୀନ
କାମନା-ବିହୀନସମ ନାହିଁ କେ ସ୍ୱାଧୀନ ।
ଦାସତ୍ୱ ସମାନ ଆଉ ନାହିଁ ଯେ ନରକ
ହୀନାଦପି ହୀନ ସିନା ଅଟଇ ଯାଚକ ।
ଅଳସ ଜନର ପାଶେ ଧନଗତି ନାହିଁ
ଦୀର୍ଘସୂତ୍ରି ତାର ଭଲ ଅନ୍ତ ଅଛି କାହିଁ ?
ନିରପେକ୍ଷ ନୁହେ କେହି ନ୍ୟାୟର ସମାନ
ଲମ୍ପଟରୁ ବଳି ନାହିଁ ଅଧୋଗତ ଜନ ।" ଇତ୍ୟାଦି

ଏହାପରେ ବହୁ ସ୍ଥାନରେ କବି ସ୍ୱକୀୟ ଉପଦେଶ ଅବତାରଣା କରିଅଛନ୍ତି; କିନ୍ତୁ ପ୍ରତି ପାଠକ ମନେ ରଖିବା ଉଚିତ ଯେ କବିମାନେ ହେଉଛନ୍ତି ସଂସ୍କାର-ପ୍ରେମୀ । ଏଇମାନେ ମଧ୍ୟ ସାମାଜିକ ସଂସ୍କାର ଆନୟନ ଓ ସମସ୍ୟାର ସମାଧାନଲାଗି ସର୍ବଦା ବ୍ୟଗ୍ର । ଆଲୋଚ୍ୟ କବି ମଧ୍ୟ ସଂସ୍କାରହୀନ ଓଡ଼ିଶାର ଦୁରବସ୍ଥା ଦେଖି ବ୍ୟଥିତ ହୋଇପଡ଼ିଛନ୍ତି । ବିଶେଷତଃ ସମାଜର ନୈତିକ ଅଧୋଗତି, ସ୍ୱାର୍ଥାନ୍ଧ ଜନତାର ଅର୍ଥ-ଲୋଲୁପତା, ଆଦର୍ଶର ଅବମାନନା କବିଙ୍କ ହୃଦୟରେ ବାରମ୍ବାର ଦୁଃଖ ସଞ୍ଚାର କରିଛି । ତେଣୁ ତାଙ୍କର ସଂସ୍କାରପ୍ରେମୀ ପ୍ରାଣ ଗାଇଉଠିଛି—

"ଭେଦେ ପଡ଼ିଅଛୁ ଅନ୍ଧ ହୋଇ ନିଜ ସ୍ୱାର୍ଥେ
ଶିଖିଅଛୁ ସ୍ୱାର୍ଥପୂଜା ଭୁଲି ପରମାର୍ଥେ
ପଶୁ ମାତତା ଗହ୍ୱରେ
ମତ-ମାର୍ଗ ତେଜି ଭ୍ରମୁ ଅସତ-ଗହ୍ୱାରେ ।

"ଜୀବନ-ସ୍ରୋତ ଏ ଦେଶେ ହୋଇଛି ପଙ୍କିଳ
ଦୁର୍ଲ୍ଲଭ ହେଲାଣି ସଚ୍ଚରିତ ଅନାବିଳ
ନତ ହେଲାଣି ଆଦର୍ଶ
ସମାଜେ ସଞ୍ଚରିବାରୁ ଭୌତିକତା ବିଷ ।"

ଏତିକରେ ମଧ୍ୟ କବିଙ୍କର ବଳବତୀ ଲେଖନୀ କୁଣ୍ଠିତ ହୋଇନାହିଁ । ଏପରି କି ପ୍ରେମଚିଠାଉ ଲେଖିଲାବେଳେ ନିରୁପମା ମୁହଁରେ କବି ସଂସ୍କାରପାଇଁ ବିପ୍ଳବର ସୂଚନା ଦେଇଅଛନ୍ତି । ନାରୀ ଅବଳା ହେଲେହେଁ ସଂସ୍କାରପାଇଁ ବିପ୍ଳବ ତୋଳିପାରେ । ଏହା-ହିଁ କବିତା ଜରିଆରେ କବିଙ୍କର ଅଭିମନ୍ତ୍ରଣା । ଉଦାହରଣସ୍ୱରୂପ—

"କନ୍ୟାକୁ ମଣି କନକ
ବିକନ୍ତି ଲୋଭି ଜନକ
କଂସେଇ ବେପାର ଟଙ୍କା କାରବାର
ମଣେ ମୁଁ ଘୋର ନରକ
ନାହିଁ ମୋ ଦିକ ହେ !"

ଏହିପରି 'ଶକୁନ୍ତଳାଙ୍କ ପତିଗୃହ-ଯାତ୍ରା'ରେ ନାରୀର କର୍ତ୍ତବ୍ୟ ଶିକ୍ଷା, 'ରତ୍ନରେଣୁ'ରେ ନୀତିଶିକ୍ଷା ଓ ଅନ୍ୟାନ୍ୟ କବିତାମାନଙ୍କରେ ମଧ୍ୟ ଯତ୍‌ସାମାନ୍ୟ ଶିକ୍ଷା ଦେଇ ସଂସ୍କାର ଆନୟନ କରିବାର ଅଭିଳାଷ କବି ହୃଦୟରେ ପୋଷିଥିବାର ମନେହୁଏ ।

ବର୍ତ୍ତମାନ ଅନୁଭୂତିମୂଳକ କବିତାଗୁଡ଼ିକ ଆଲୋଚନା କରାଯାଉ । ସାହିତ୍ୟ ହେଉଛି ଯୁଗେ ଯୁଗେ ଅନୁଭୂତିର ପ୍ରତିବିମ୍ବ । ପ୍ରକୃତରେ ସାହିତ୍ୟରେ ଆତ୍ମକୈନ୍ଦ୍ରିକତା ଯଥେଷ୍ଟ ଭାବରେ ପ୍ରକାଶ ଲାଭ କରିଥାଏ । ତେଣୁ 'କବିତାକୁମୁଦ'ର ଆଦ୍ୟଭେଟି, ମଞ୍ଜୁଳାମାଧବ, କିଶୋର ପାଖକୁ କାମିନୀ, ରତ୍ନମାଳା ପାଖକୁ ମାଧବ, ମାଳତୀପ୍ରତି ବସନ୍ତ, ନିତ୍ୟାନନ୍ଦ ପାଖକୁ ନିରୁପମା ଇତ୍ୟାଦି କବିତାଗୁଡ଼ିକ ପାଠ କଲାବେଳେ ପାଠକମନରେ ସ୍ୱତଃ ଏକ ପ୍ରଶ୍ନ ତୋଳି ଉଠେ—ତାହାହେଲେ ଏହି କବିତାଗୁଡ଼ିକ ଏତେ ମର୍ମସ୍ପର୍ଶୀ ଓ ଦୁଃଖାନୁଭୂତିରଞ୍ଜିତ ହୋଇଛି କାହିଁକି ? କବିଙ୍କର ଜୀବନୀ ପାଠ କରିସାରିଲାପରେ ପାଠକ ତାହାର ଉତ୍ତର ପାଇଯାଏ । ଉପର୍ଯ୍ୟୁକ୍ତ କବିତାଗୁଡ଼ିକରେ ନାୟିକା ଭୂମିକା ଅନ୍ତରାଳରେ କବିଙ୍କର ଏକାଦଶବର୍ଷୀୟା ବାଳିକା ପ୍ରଣୟିନୀ ଉପସ୍ଥିତ ନ ଥିଲେ କବିତାଗୁଡ଼ିକ ଏତେ ବିରହବ୍ୟଞ୍ଜକ ହୋଇପାରି ନ ଥାନ୍ତା । ଅନେକ ପାଠକ କବିଙ୍କର ଏକାଦଶବର୍ଷୀୟା ବାଳିକାପ୍ରତି ପ୍ରଗାଢ଼ ପ୍ରଣୟ ଥିବା ଜାଣି ଉପହାସ କରିପାରନ୍ତି; କିନ୍ତୁ ଏହା ଯେ କେବଳ କବି ବିଚ୍ଛନ୍ଦଙ୍କ ଜୀବନରେ ଘଟିଥିଲା ତାହା ନୁହେଁ; ମହାକବି 'ଦାନ୍ତେ'ଙ୍କ ଜୀବନରେ ଏହିପରି ଘଟିଥିବାର ଆମ୍ଭେମାନେ ପ୍ରମାଣ ପାଉ । ୧୮୭୪ ଖ୍ରୀ:ଅ:ରେ ଦାନ୍ତେଙ୍କର ବୟସ ଯେତେବେଳେ ମାତ୍ର ୯ ବର୍ଷ, ସେତିକିବେଳେ 'ଫ୍ଲୋରେନ୍‌ସର ଗୋଟିଏ ବାଳିକା (ବିୟନିଂଶ)ଙ୍କ ସହିତ ତାଙ୍କର ଦେଖାହୁଏ ଓ ଉଭୟେ ଉଭୟଙ୍କପ୍ରତି ପ୍ରଣୟାସକ୍ତ ହୁଅନ୍ତି; କିନ୍ତୁ ସମସ୍ତ ଦୈହିକ ଭୋଗ ନିମିତ୍ତ କବିଙ୍କୁ ଅନୁମତି ଦିଏ ନା । ବିୟନିଂଶ ଚିରଦିନପାଇଁ ସଂସାରକ୍ଷେତ୍ରରୁ ବିଦାୟ ନିଅନ୍ତି; କିନ୍ତୁ କବି ସେହି ନାୟିକାଙ୍କୁ କେନ୍ଦ୍ର କରି ସୃଷ୍ଟି କରନ୍ତି ଶାଶ୍ୱତ ମିଳନ (Divina Commedia) ଏକ ବିଶ୍ୱବିଖ୍ୟାତ ଗ୍ରନ୍ଥ । କବି ବିଚ୍ଛନ୍ଦ ଠିକ ସେହିପରି ନିଜର ପ୍ରଣୟପ୍ରତିମା ବାଳିକାଟିର ମୃତ୍ୟୁପରେ ସୃଷ୍ଟି କରନ୍ତି ବିରହବିଧୁର କବିତାବଳୀ । ଉଦାହରଣସ୍ୱରୂପ, ପଦଟିଏ ଏଠାରେ ଅବତାରଣା କରାଗଲା—

"କଳପନା ମନ୍ଦିରୁହେ ବାସ୍ତବ ଅଙ୍ଗନ
ଜାଳି ଦେବ ବନ୍ଧୁ ଆରେ ଥିଲି ନାହିଁ ଜାଣି
ଚିର ବିଚ୍ଛେଦ-ବଜ୍ରହେ,
ଲୁଚି ଯାଇ ବାରେ ଆଉ ନ ହୋଇବୁ ଉଦେ ।"

ଏତଦ୍‌ବ୍ୟତୀତ 'ଅଲଘ୍ୟ ମୋହର ଗଣ', 'ଆସ ମୋର ରଙ୍କ ସଙ୍ଗିନୀ,' 'ବିରହବାରମାସୀ,' ବିଚ୍ଛେଦ ଚଉତିଶା'ରେ କବିଙ୍କ କ୍ଷୁବ୍ଧଲଳିତ ହୃଦୟର ଦୃଢ଼ତା ପ୍ରେୟସୀପ୍ରତି ସାମୟିକ ଆତ୍ମସମର୍ପଣ ରୂପରେଖ ପାଇଛି ।

ଅଧୁନା କବିଙ୍କର ଉକ୍ତିଭବ ବିରୁଦ୍ଧ୍ୟ । ବିଂଶ ଶତାବ୍ଦୀର ବିଜ୍ଞାନ ଓ ବସ୍ତୁତାନ୍ତ୍ରିକତା ମଧ୍ୟରେ ଥାଇ ମଧ୍ୟ କବି ନିଜକୁ ଜଗନ୍ନାଥଙ୍କର ଜନୈକ ପରମଭକ୍ତ ହିସାବରେ ନେଇ ଅଛନ୍ତି । ରଚନାପଦ୍ଧତି ପାରମ୍ପରିକ ହୋଇଛି ସତ; କିନ୍ତୁ ଅପୂରନ୍ତଭାବରେ ସନ୍ନିବେଶ କବିଙ୍କର ଅବିକୃତ କାରୁକୃତିର ଯଥେଷ୍ଟ ପରିଚୟ ଦେଇଥାଏ । "ଶ୍ରୀ ଶ୍ରୀ ଜଗନ୍ନାଥଜଣାଣ ଭଜନ"ରେ ଥିବା କବିକୃତ ଜଣାଣଗୁଡ଼ିକ ଏହାର ଉଦାହରଣ । ବର୍ତ୍ତମାନ କବିଙ୍କର ପଦଟିରେ ଆକୁଳ ନିବେଦନ ଶୁଣନ୍ତୁ—

"ବଡ଼ଦାଣ୍ଡଧୂଳି ହରି !
ବିଭୂତି ହେବ କି ଅଙ୍ଗେ ମୋହରି ହେ
ବିଦେହ ହେବି ଶ୍ରୀମୁଖ ହେରି, ସାମନ୍ତ ହେ !"

ଏତଦ୍‌ଭିନ୍ନ ଶ୍ରେଷ୍ଠ କାବ୍ୟମାନ ଆଲୋଚନା କଲାବେଳେ ସମାଲୋଚକଙ୍କୁ ତିନୋଟି ଜିନିଷ ଉପରେ ତୀକ୍ଷଣ ଦୃଷ୍ଟି ଦେବାକୁ ପଡ଼ିଥାଏ । ତାହା ହେଉଛି— କଳ୍ପନା, ରାଗ ଛନ୍ଦ, ଭାଷା ଓ ଶୈଳୀ । ପ୍ରକୃତରେ ଭାବ ତଥା କଳ୍ପନା ଯଦି କବିତାର ଆତ୍ମା ହୁଏ, ତେବେ ଛନ୍ଦ ହେବ ଶରୀର । କବି ବିଚ୍ଛନ୍ଦ ଏହି ସମସ୍ତ ସାହାଯ୍ୟରେ କବିତା-ସୁନ୍ଦରୀର ରୂପ-ବିନ୍ୟାସ କରିଅଛନ୍ତି । ଭାଷା କବିଙ୍କର ବେଳେବେଳେ କଠିନ ହୋଇପଡ଼ିଛି; କିନ୍ତୁ 'ପ୍ରମଦାଜୟନ୍ତୀ', 'ଭିକ ନ ମିଳିଲି ଆଉ', 'ଶିଶୁରଞ୍ଜନ', 'ପିଲାଙ୍କ ଗୋପବନ୍ଧୁ' ଇତ୍ୟାଦି କବିତାଗୁଡ଼ିକରେ ବଙ୍ଗଳା-କବି କୁମୁଦରଞ୍ଜନ ଓ ଓଡ଼ିଆ-କବି ଗୋଦାବରୀଶଙ୍କ ସାରଲ୍ୟ ଅନ୍ତର୍ଭୁକ୍ତ ହୋଇଅଛି । ପୁନଶ୍ଚ ସଙ୍ଗୀତମୟତା କବିତାକୁ ଏକ ଅଲୌକିକ ଶକ୍ତି ଯୋଗାଏ । ବିଶେଷତଃ ନାନା ଛନ୍ଦର ଅବତାରଣାରେ କବିତା ପୁଷ୍କଳ ତଥା ସରସ ହୋଇଥାଏ । ଉତ୍କଳୀୟମାନେ ଛନ୍ଦ-କଳ୍ପତରୁତଳେ ରହି ମଧ୍ୟ ସେମାନଙ୍କର ବର୍ତ୍ତମାନ ରସପିପାସା ନାହିଁ । ତେଣୁ କବି ଆତ୍ୟନ୍ତିକ ମର୍ମବେଦନା ପ୍ରକାଶ କରି ଗାଇ ଉଠିଛନ୍ତି—

"ଗାଉଛୁ ଉତ୍କଳ ପର ସଙ୍ଗୀତ
ନ ଜାଣୁଛୁ ନିଜେ ନିଜର ବିତ୍ତ ।
ସେକାଳ ବିପକ୍ଷ ଏକାଳ ତାନ
ଯୋଗ ବିନା ଧମା ହାରୁଛୁ ମାନ
ଛନ୍ଦ - କଳ୍ପତରୁତଳେ ଯେ
ରହି ରସ-କ୍ଷୁଧା ନ ମେଣ୍ଟୁଛୁ ତାର
ଭାଗ୍ୟେ ବିଳିବ କେ ବଳେ ଯେ ।"

ମଣିଷକୁ ଦେବତା କରି ଗଢ଼ିବା କାବ୍ୟ-କବିତାର ମୁଖ୍ୟ ଲକ୍ଷ । ଏହି ଲକ୍ଷ୍ୟ କବିଙ୍କର କାବ୍ୟମାନଙ୍କରେ ସଫଳକାମ ହୋଇଅଛି । କବି ଜୀବନସାଗର ମନ୍ଥନ କରି ଦାରିଦ୍ର୍ୟରୂପକ ହଳାହଳ ପାନ କରିଅଛନ୍ତି; କିନ୍ତୁ ଯେଉଁ ସାହିତ୍ୟାମୃତ ପରିବେଷଣ କରିଯାଇଅଛନ୍ତି, ତାହା ଓଡ଼ିଶାର ସାହିତ୍ୟ-ପ୍ରିୟ ଜନତା ଆସ୍ୱାଦନ କରିବା ସଙ୍ଗେ ସଙ୍ଗେ କବିଙ୍କର ଉପଯୁକ୍ତ ସ୍ମୃତିରକ୍ଷା ନିମିତ୍ତ ତତ୍ପର ହେବା ଉଚିତ ।



# ନେନ ଏହି ଶ୍ରଦ୍ଧାଞ୍ଜଳି

## ଶ୍ରୀ ଗୋପୀନାଥ ସାହୁ

ଉତ୍କଳ-ମାତାର ହେ କୃତୀ ସନ୍ତାନ ! ଆଜ ତୁମ ଶ୍ରାଦ୍ଧଦିନେ,
ଅତୀତର ଶତ ସ୍ମୃତି-ବିଜଡ଼ିତ କେତେ କଥା ପଡ଼େ ମନେ ।
ତୁମ ଶ୍ରେଷ୍ଠ କୃତି 'କଳିଙ୍ଗ-ଭାରତୀ' ଆଜ ଶୋକେ ଜରଜର,
ସାହିତ୍ୟ-କାନନୁ ଆହରି କୁସୁମ କେ ଦେବ ତା' ଗଳେ ହାର ?

ମୂଳମନ୍ତ୍ର ଥିଲା ବାଣୀ-ଆରାଧନା ନେବାଯାଏ ଶେଷ ଶ୍ୱାସ,
ଦୁଃଖ-ଦୈନ୍ୟେ ବ୍ୟସ୍ତ ନ ଥିଲ, ବଦନୁ ଝରି ପଡ଼ୁଥିଲା ହାସ ।
'ବଜାଜାତୀୟତାର ପ୍ରତିରୋଧକର' ତୁମର ବିପ୍ଳବ ବାଣୀ,
ଉତ୍କଳୀ ପ୍ରାଣରେ ଅପୂର୍ବ ପ୍ରେରଣାଉତ୍ସ ଭରିଦେଲ ଆଣି ।

ଅଦମ୍ୟ ଉତ୍ସାହେ ସମବେତ ହେଲେ ତରୁଣ ସାଧକଦଳ,
'ଉତ୍କଳର ଯୁବ-ସାହିତ୍ୟ ସମାଜ' ତୁମେ ଗଢ଼ିଦେଇ ଗଲ !
ଜାତୀୟ ଜୀବନେ ନବ ଦୃଷ୍ଟିଭଙ୍ଗୀ ହେଲା ପୁଣି ପ୍ରଚଳନ,
ଚିରଜୀବୀ ହେଉ 'କଳିଙ୍ଗ-ଭାରତୀ' କର ଏହି ସୁକଲ୍ୟାଣ ।

ହେ ଶୁଦ୍ଧ ବୈଷ୍ଣବ ! ବିଷ୍ଣୁପାଦପଦ୍ମ ପାଇବାକୁ ଅନ୍ତଃକାଳେ,
କରୁଥିଲ ଚିନ୍ତା ନ ଇଚ୍ଛିଣ ସ୍ୱର୍ଗ 'ଭୋଗଚକ୍ର' ଜାଣି ହେଲେ ।
ଶ୍ରୀଜଗନ୍ନାଥଙ୍କ ନିଜ ଧାମେ ରହି ଆମ୍ଭେମାନେ ହୁଅ ବଳୀ,
କବି - କଞ୍ଜ - ବନ - ଭଞ୍ଜ - ରାଜଜରୁ ନେନ ଏହି ଶ୍ରଦ୍ଧାଞ୍ଜଳି ।



# ସେ ଦିନର ଚିତା

## ଶ୍ରୀ ଜୀବପ୍ରସାଦ ମିଶ୍ର

( ସଂଗଠନ-ସମ୍ପାଦକ, "କଳିଙ୍ଗ-ଭାରତୀ" )

୧୯୬୧ ମସିହା ଜାନୁଆରୀ ୧୮ ତାରିଖର ରାତି, "ସତ୍ୟଚଉରା"ରେ ବହୁ ଊର୍ଦ୍ଧ୍ୱକୁ ଶିଖା ଉଠାଇ ଜଳୁଥିଲା ସେଦିନର ଚିତାନଳ, ଗଭୀର ନିଶୀଥର ଗାମ୍ଭୀର୍ଯ୍ୟ ସତେ ଯେପରି ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କୁ କରିଦେଇଥିଲା ମୂକ। କାହାରି ମୁଖରେ ପଦେହେଲେ କଥା ନାହିଁ। ସତେ ଯେପରି ସମସ୍ତେ ଜଡ଼, ଆଗରେ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ସ୍ମୃତିସ୍ତମ୍ଭ। ସେ ମଧ୍ୟ ଆଜି ପଥର। ଉକ୍ତିରେ 'ଭାଷାକୋଷ' ବି ନୀରବ। ଏହି ଭୟାବହ ନୀରବତା ଓ ନିଃଶବ୍ଦତାରେ ଜଳି-ଯାଉଥିଲା, ବିଚ୍ଛନ୍ଦବାବୁଙ୍କର ମର ଶରୀର ନୁହେଁ, ଗୋଟାଏ ଯୁଗର ଅତୁଟ ଓ ଅସମାପ୍ତ ସଂଗ୍ରାମ। ହୁ-ହୁ ହୋଇ ଜଳିଉଠୁଥିଲା ଚିତା। "ମୃତ୍ୟୁ" ଭଳି ଏକ ନିଷ୍ଠୁର ସତ୍ୟକୁ ପ୍ରତିଷ୍ଠା କରି ଚିତାନଳ ଯେତିକି ଜୋରରେ ଜଳିଉଠୁଥିଲା ସେତିକି ଶୀଘ୍ର ଲିଭିଯାଉଥିଲା ସେ ବିରାଟ ସଂଗ୍ରାମର ସମୁଜ୍ଜ୍ୱଳ ପ୍ରଦୀପ। ମର୍ମନ୍ତୁଦ ବ୍ୟଥାଭାରରେ ସମସ୍ତେ ହୋଇଥିଲେ କେବଳ ନୀରବ-ଦ୍ରଷ୍ଟା।

ଗୁରୁଦେବଙ୍କର ଜୀବନ ଥିଲା ସଂଗ୍ରାମମୟ। ସଂଗ୍ରାମ ଯେପରି ତାଙ୍କର ଚିରସହଚର ଥିଲା। ଶାରୀରିକ ଅକ୍ଷମତାଠାରୁ ଆରମ୍ଭ କରି ସାହିତ୍ୟ କ୍ଷେତ୍ରରେ ଆଦର୍ଶର ପ୍ରତିଷ୍ଠାପର୍ଯ୍ୟନ୍ତ ସକଳ ବିଷୟରେ ତାଙ୍କୁ ସଂଗ୍ରାମ କରିବାକୁ ପଡ଼ିଛି। ସଂଗ୍ରାମ ଯେ ତାଙ୍କ ଜୀବନର ବ୍ରତ ଥିଲା, ସେକଥା ସେ ନିଜେ ବହୁବାର ଆନନ୍ଦ ଓ ଗର୍ବର ସହ ସ୍ୱୀକାର କରୁଥିଲେ। ସତ୍ୟ-ପାଇଁ ସଂଗ୍ରାମ କରିବାରେ ସେ ଯେପରି ଦୃଢ଼ତା ଓ ନିର୍ଭୀକତା ପ୍ରକାଶ କରୁଥିଲେ, ତାହା ବାସ୍ତବିକ୍ ବିରଳ। ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ସୁପରିଚିତ ତାଙ୍କର ସମସାମୟିକ ମୃତ ବା ଜୀବିତ ବହୁ ବିଶିଷ୍ଟ ବ୍ୟକ୍ତି ଏକଥା ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି। ବିଚ୍ଛନ୍ଦବାବୁଙ୍କର ନିର୍ଭୀକ ସଂଗ୍ରାମ ଓଡ଼ିଶାରେ କାହାକୁ ବା ଅବିଦିତ ?

ସଂଗ୍ରାମଶୀଳ ଗୁରୁଦେବ ଭଲରୂପେ ହୃଦୟଙ୍ଗମ କରିଥିଲେ ଯେ ଜୀବନ ଯେତିକି ସଂଗ୍ରାମର ସମ୍ମୁଖୀନ ହୁଏ, ତାହା ସେତିକି ପ୍ରତିଷ୍ଠିତ ଓ ବଳିଷ୍ଠ ହୁଏ। ଜୀବନ-ସଂଗ୍ରାମର ଭୀଷଣତାରେ ଧୈର୍ଯ୍ୟଶୀଳ ଓ ସତ୍ୟପ୍ରାଣ ବ୍ୟକ୍ତିଙ୍କର ପ୍ରତିଭା ଲାଳିତପାଳିତ ହୁଏ, ପରିପୁଷ୍ଟ ହୁଏ ଏବଂ ପୂର୍ଣ୍ଣ ବିକଶିତ ହୁଏ। ବହୁ ପ୍ରତିଭାବାନ୍ ବ୍ୟକ୍ତିଙ୍କର ଅମୂଲ୍ୟ ଜୀବନଚରିତ ଏ ମହାନ ସତ୍ୟର ଚିରସାକ୍ଷୀ। ଗୁରୁଦେବଙ୍କର ଜୀବନର ସର୍ବସ୍ୱ ଥିଲା ସାହିତ୍ୟ। ସାହିତ୍ୟକୁ ମାର୍ଜିତ ରୁଚି ଓ ସୁମଞ୍ଜୁଳ ରୂପ ଦେବା ହିଁ ଥିଲା ତାଙ୍କର ଆଦର୍ଶ। ଜୀବନର ଶତ ଝଡ଼ଝଞ୍ଜା ମଧ୍ୟରେ ଏ ଆଦର୍ଶରୁ ତିଳେହେଲେ ବିଚ୍ୟୁତ ନ ହେବାରେ ସେ ଥିଲେ ହିମାଦ୍ରି ତୁଲ୍ୟ ଅଟଳ ଓ ଅଚଳ। ଜୀବନର ସମସ୍ତ ସୁଖ-ସମ୍ଭୋଗକୁ ସାହିତ୍ୟ-ଯଜ୍ଞରେ ଆହୂତି ଦେଇ ସେ ଓଡ଼ିଶାରେ ଏକ ମହୀୟାନ୍ ଆଦର୍ଶ ସୃଷ୍ଟି କରିଯାଇଛନ୍ତି। ଜାତିର ସାହିତ୍ୟପାଇଁ ବିଶେଷତଃ ସାହିତ୍ୟରେ ଆଦର୍ଶପାଇଁ ସକଳ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇଥିବାରୁ ଗୁରୁଦେବ ହୁଏତ ବହୁମୂଲ୍ୟ ସମ୍ପତ୍ତିର ଅଧିକାରୀ ହେବାରୁ ବଞ୍ଚିତ ହୋଇଥିଲେ।

ସେଥିପାଇଁ ହୁଏତ ଜୀବନର ଶେଷାବସ୍ଥାରେ ତାଙ୍କୁ ଦାରୁଣ ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ମୃତ୍ୟୁପରେ ସେ ନିଜର ପରିବାରକୁ କପର୍ଦ୍ଦକହୀନ କରି ଛାଡ଼ିଗଲେ । କିନ୍ତୁ ଏସବୁପାଇଁ ସେ ତିଳେ-ହେଲେ କେବେ ଦୁଃଖ ପ୍ରକାଶ କରୁ ନ ଥିଲେ । କାରଣ ସେ ଜାଣିଥିଲେ, ବ୍ୟକ୍ତିବିଶେଷଙ୍କର ସ୍ୱାର୍ଥ-ତ୍ୟାଗ ବିନା ଜାତୀୟ କାର୍ଯ୍ୟସିଦ୍ଧି ଅସମ୍ଭବ । ତେଣୁ ତାଙ୍କ ଜୀବନକୁ ଓଡ଼ିଶାର ସାହିତ୍ୟପାଇଁ ଏକ ସଂଗ୍ରାମ ବୋଲି ସେ ଗ୍ରହଣ କରିଥିଲେ । ୧୯୫୦ ମସିହାରେ ଆରମ୍ଭ କରିଥିବା ତାଙ୍କର "ଆତ୍ମ-ଚରିତ"ର ନାମ ସେ ନିଜେ ଦେଇଛନ୍ତି—"ସାହିତ୍ୟପାଇଁ ସଂଗ୍ରାମ" । ଗଭୀର ଦୁଃଖର ବିଷୟ ଯେ, ସେ ଆତ୍ମ-ଚରିତ ସମ୍ପୂର୍ଣ୍ଣ ହେବାପୂର୍ବରୁ ବିଧିର ନିଷ୍ଠୁର ବିଧାନରେ ତାଙ୍କର ଇହ-କାଳ ସ୍ଥିତି ସମ୍ପୂର୍ଣ୍ଣ ହୋଇଗଲା । ତଥାପି ସେହି ଅସମ୍ପୂର୍ଣ୍ଣ ଆତ୍ମ-ଚରିତରେ ଲିପିବଦ୍ଧ ହୋଇଥିବା ଗୁରୁଦେବଙ୍କର ଜୀବନ-ସଂଗ୍ରାମର ଶଙ୍ଖ ଆଜି ମଧ୍ୟ ଜୀବନ୍ତ ।

ଜୀବନର ସକଳ କ୍ଷେତ୍ରରେ ସଂଗ୍ରାମର ସମ୍ମୁଖୀନ ହୋଇଥିଲେ ମଧ୍ୟ ଗୁରୁଦେବଙ୍କର ଆଶାବାଦିତାର ମହୋଜ୍ଜ୍ୱଳ ବର୍ତ୍ତିକା କେବେହେଲେ ନିଷ୍ପ୍ରଭ ହୋଇ ନ ଥିଲା । ଭଗବାନଙ୍କଠାରେ ଅଟଳ ବିଶ୍ୱାସ ସ୍ଥାପନ କରି ସେ ବିପଦକୁ ଧୈର୍ଯ୍ୟର ସହ ଗ୍ରହଣ କରୁଥିଲେ । ତାଙ୍କର ଧୈର୍ଯ୍ୟ ଏପରି ଅଟଳ ଓ ଅତୁଳନୀୟ ଥିଲା ଏବଂ ଆଶାବାଦିତା ଏପରି ଅସାଧାରଣ ଥିଲା ଯେ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିବା ବହୁ ବ୍ୟକ୍ତି ବିଶେଷତଃ କଳିଙ୍ଗ-ଭାରତୀର ସଭ୍ୟବୃନ୍ଦ ଅଧିକାଂଶ ସମୟରେ ଅତିଶୟ ବିସ୍ମିତ ହୋଇପଡ଼ୁଥିଲେ । ଅସମ୍ପୂର୍ଣ୍ଣ ଆତ୍ମ-ଚରିତରେ ଗୁରୁଦେବ ନିଜେ ଯାହା ଲେଖିଯାଇଛନ୍ତି, ତାହା ଏଠାରେ ଉଲ୍ଲେଖଯୋଗ୍ୟ—

"ଖଞ୍ଜଭିତ୍ତିଜନିତ କାୟିକ କ୍ଲେଶର ଅତିରିକ୍ତ ଅନ୍ୟପ୍ରକାର କ୍ଲେଶର ସମ୍ମୁଖୀନ ହୋଇ ଖଞ୍ଜତ୍ୱ ଲାଭ କରିଥିବାରୁ ପୂର୍ବଜନ୍ମକୃତ ଦୁଷ୍କୃତମାନଙ୍କୁ ମୁଁ ଶତଧିକ୍କାର ଦେଲି । ମୁଁ ଯେ ପର୍ଯ୍ୟାପ୍ତ ଉଚ୍ଚଶିକ୍ଷା ପାଇ ପାଞ୍ଚଜଣଙ୍କ ଭିତରେ ଜଣେ ହୋଇପାରିବି, ଜନନୀ ଏ ବିଷୟରେ ସନ୍ଦିହାନ ହୋଇପଡ଼ିଲେ । ମୁଁ ଜୀବନରେ ନିଶ୍ଚୟ ଯେ ମହତ୍ ହୋଇପାରିବି, ଏ ଦୁର୍ଦ୍ଦମ ଆଶାବାଦିତା ମୋତେ ସବୁ ବିଧାବିଘ୍ନକୁ ପାଦରେ ଦଳିଦେବାକୁ ନିରବଚ୍ଛିନ୍ନଭାବରେ ପ୍ରେରଣା ଦେଉଥାଏ । ସେହି ଆଶାବାଦିତା ହିଁ ଏପର୍ଯ୍ୟନ୍ତ ମୋ ଜୀବନର କବଚ ହୋଇଅଛି । ଘନଘଟାପରେ ଘନଘଟା ଆସି ଜୀବନପଥକୁ ତମସାଚ୍ଛନ୍ନ କରି ଦେଇ-ଅଛି, କେଉଁଆଡ଼େ ହେଲେ ପଥ ଦୃଷ୍ଟିଗୋଚର ହୋଇ ନାହିଁ । ସଂସାର ନିର୍ମମ ହୋଇ ତା'ର ଗନ୍ତବ୍ୟପଥରେ ଧାଇଁଅଛି । ତା' ଦେଖି ଅତି ବଳିଷ୍ଠ ହୃଦୟ ମଧ୍ୟ ଲସିଯିବାକୁ କ୍ଷଣେ ମାତ୍ର ଲାଗିବ ନାହିଁ । ତଥାପି ଦୈବପ୍ରେରିତଭଳି ପ୍ରତିବନ୍ଧକ ପିଠିରେ ଧକ୍କା ମାରି ତାକୁ ମୁଁ ମୋ ପଥରୁ ଅପସାରିତ କରିଛି ଓ ଲକ୍ଷ୍ୟପଥରେ ଧାଇଁଅଛି ।"

ଏଭଳି ଆଶାବାଦିତା ନ ଥିଲେ ଦାରୁଣ ଦୁଃଖମୟ ଜୀବନରେ ଗୁରୁଦେବଙ୍କର ପ୍ରତିଭାର ବିକାଶ ହୁଏତ ସମ୍ଭବପର ହୋଇ ନ ଥା'ନ୍ତା । ବାଲ୍ୟକାଳରୁ ମୃତ୍ୟୁଶଯ୍ୟାପର୍ଯ୍ୟନ୍ତ ତାଙ୍କର ଜୀବନ ଅତିଶୟ ଦୁଃଖମୟ ଥିଲା । ସେ ଦୁଃଖମୟ ଜୀବନର କରୁଣ କାହାଣୀ ଆମ୍ଭେମାନେ ଅନେକ ଥର ଶୁଣିଅଛୁ । ତାହାର ବର୍ଣ୍ଣନା କରି ଗୁରୁଦେବ ତାଙ୍କର ଆତ୍ମ-ଚରିତରେ ଲେଖିଛନ୍ତି—"ଶରୀର ଦିଗରୁ ଦେଖିଲେ ଏକପ୍ରକାର ସ୍ଥାଣୁ । ଜନକଙ୍କ ସମ୍ବଳହୀନତା ଦିଗରୁ ଦେଖିଲେ ବ୍ୟୟବହୁଳ ଉଚ୍ଚଶିକ୍ଷା ଲାଭପାଇଁ ପୂର୍ଣ୍ଣ ଅସମର୍ଥ, ଅଥଚ ଉଚ୍ଚାଭିଳାଷର ଉଦ୍ଦାମତାରେ ସମ୍ପୂର୍ଣ୍ଣ ଅଥୟ ମୋଭଳି ଜଣେ ଯୁବକ ବିଧାତାଙ୍କର ଏକାନ୍ତ ଦୟନୀୟ ସୃଷ୍ଟି । ବିଧାତାଙ୍କ ଦୃଷ୍ଟିରୁ ମୋର ଏତାଦୃଶ ଜୀବନ ସାର୍ଥକ, କାରଣ ଏହାକୁ ଉପାୟ କରି ସେ ତାଙ୍କ ଅଘଟ-ଘଟନ-ପଟୀୟସୀ ମହିମାକୁ ପ୍ରକଟିତ କରୁଅଛନ୍ତି; କିନ୍ତୁ ଜୀବନର ପୁଷ୍ପାସ୍ତୃତ ପଥରେ

ଯେଉଁମାନେ ସ୍ୱଚ୍ଛନ୍ଦଗାମୀ, ସେମାନଙ୍କ ନିକଟରେ ମୋ କେଶସଙ୍କୁଳ ଜୀବନ ନିଷ୍ପ୍ରୟୋଜନୀୟ ତୁଚ୍ଛ ।"

ଗୁରୁଦେବଙ୍କ ଜୀବନର ଏତାଦୃଶ ଚିତ୍ର ଓଡ଼ିଶାର ଅଧିକାଂଶ ଲୋକଙ୍କୁ ଜଣା ନ ଥିବ । କାରଣ ଅତ୍ୟନ୍ତ ଘନିଷ୍ଠ ସମ୍ପର୍କରେ ଆସି ନ ଥିବା କେହି ବ୍ୟକ୍ତି ଏ ବିଷୟ ଅବଗତ ହେବା ଅସମ୍ଭବ ଥିଲା । ସଭାସମିତି-ମାନଙ୍କରେ ଓଡ଼ିଶାର ଜାତୀୟତାପାଇଁ ଗୁରୁଦେବଙ୍କର ଅଗ୍ନିମୟୀ ବାଣୀ ଶୁଣିଲେ କିଏ ବା ଭାବିବ ଯେ ତାହା ଜଣେ ସମ୍ବଳହୀନ ବ୍ୟକ୍ତିର ଭାଷା ? କିନ୍ତୁ ତାହାହିଁ ଥିଲା ଗୁରୁଦେବଙ୍କ ଜୀବନର ଗୌରବ । ଜୀବନରେ ଆର୍ଥିକ ଦୃଷ୍ଟିରୁ ନିତାନ୍ତ ଗୌଣ ସ୍ଥାନ ପାଇଥିଲେହେଁ ସତ୍ୟପାଇଁ ସମାଲୋଚନା କରିବାକୁ ସେ କାହାକୁ ଭୟ କରୁ ନ ଥିଲେ । ସେଥିପାଇଁ ନିଜ ଜୀବଦ୍ଦଶାରେ ସେ ବହୁ ବ୍ୟକ୍ତିଙ୍କର ଚକ୍ଷୁଶୂଳ ହୋଇ ପଡ଼ିଥିଲେ । ତଥାପି କାହାରିପ୍ରତି ବା ନିଜର ସମ୍ବଳ-ହୀନତାପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥିଲା । ସେ ଯାହା ସତ୍ୟ ମଣୁଥିଲେ, ତାହା କେତେକଙ୍କୁ ଯେତେ କଟୁକର ହେଲେ ମଧ୍ୟ ତାହାକୁ ବଜ୍ରଗମ୍ଭୀର ସ୍ୱରରେ ଘୋଷଣା କରିବାକୁ ସେ ତିଳେହେଲେ କୁଣ୍ଠାବୋଧ କରୁ ନ ଥିଲେ । ସତ୍ୟକୁ ପ୍ରକାଶ କରିବାପାଇଁ ଭୟ କରିବା-ଭଳି କାପୁରୁଷତାଠାରୁ ହୀନ କାପୁରୁଷତା ଆଉ ନାହିଁ ବୋଲି ସେ ସର୍ବଦା କହୁଥିଲେ । ତାଙ୍କ ପ୍ରତିଷ୍ଠିତ "କଳିଙ୍ଗ-ଭାରତୀ"ର ସଭ୍ୟମାନଙ୍କୁ ସେ ଏହା ଶିକ୍ଷା ଦେଉଥିଲେ ଏବଂ ବହୁ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ରଚନାବଳୀରେ ସେ ଏହା ପ୍ରତିଷ୍ଠା କରୁଥିଲେ । ଓଡ଼ିଆଙ୍କୁ ତାଚ୍ଛଲ୍ୟ କରି " ଦୁଇ ବିଘା ଜମି " କବିତାରେ "ଉଡ଼େ" କହିଥିବାରୁ ବିଶ୍ୱ-କବି ରବୀନ୍ଦ୍ରନାଥ ମଧ୍ୟ "ପ୍ରାଚୀ" ପତ୍ରିକାରେ ବିଚ୍ଛନ୍ଦବାବୁଙ୍କର ତୀକ୍ଷ୍ଣ ସମାଲୋଚନାର ସମ୍ମୁଖୀନ ହୋଇଥିଲେ । ସେହିପରି ୧୯୩୧ ମସିହାରେ ତାଙ୍କ ଦ୍ୱାରା ସମ୍ପାଦିତ ଏହି "ପ୍ରାଚୀ" (The Prachi) ପତ୍ରିକାରେ ପ୍ରକାଶିତ "ମେଦିନାପୁର" ବିଷୟରେ ଲିଖିତ ତାଙ୍କର ଇଂରାଜୀ ପ୍ରବନ୍ଧ " History's verdict against Bengal's unholy claim " ସମଗ୍ର ବଙ୍ଗରେ ଚହଳ ପକାଇଦେଇଥିଲା । ସେହି ପ୍ରବନ୍ଧରେ ପ୍ରକଟିତ ଗୁରୁଦେବଙ୍କର ଜାତୀୟତାବୋଧ ବହୁ ଉତ୍କଳୀୟଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେଥିରେ ସେ ଲେଖିଥିଲେ—" Personally we are ready to offer our heads to be smashed to provide cement that would weld for-ever the disunion of our land. It is our considered opinion that from the blood of the martyrs will spring the tree of Greater Orissa ।" ଏହି ପ୍ରବନ୍ଧ ସେତେବେଳେ ସମସ୍ତ ଉତ୍କଳବାସୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏପରିକି ଦେଶପ୍ରାଣ କୁଳବୃଦ୍ଧ ମଧୁସୂଦନ ବିଚ୍ଛନ୍ଦବାବୁଙ୍କୁ ଏଥିପାଇଁ ଅଭିନନ୍ଦନ ଜଣାଇବାକୁ ନିଜେ ବ୍ୟକ୍ତିଗତ ଭାବରେ ତାଙ୍କ ନିକଟକୁ ଆସିଥିଲେ । ଏ ବିଷୟରେ ପ୍ରାଚୀ ପତ୍ରିକାରୁ ନିମ୍ନଲିଖିତ ଅଂଶ ଉଦ୍ଧାର କରିଯାଇପାରେ—"Mr M. S. Das, the father of New Orissa personally came down to us and in the overflow of his usual patriotic fervour con-gratulated us on our having been on what, in his opinion, also was the right track in nationalism."

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବାରେ ଗୁରୁଦେବଙ୍କଦ୍ୱାରା ସମ୍ପାଦିତ ଏହି "ପ୍ରାଚୀ" ପତ୍ରିକାର ଅବଦାନ ମଧ୍ୟ ଅତୁଳ ଥିଲା । ଇଂରାଜୀ ଭାଷାରେ ଗୁରୁଦେବଙ୍କର ଅସାଧାରଣ ଦକ୍ଷତା ଥିବାରୁ ଜାତୀୟ ଭାବର ବଳିଷ୍ଠ ଚିନ୍ତାଧାରା ତହିଁରେ ସୁସ୍ପଷ୍ଟ-ରୂପେ ପ୍ରକାଶଲାଭ କରି ଜାତିପ୍ରାଣ ପ୍ରତ୍ୟେକ ବ୍ୟକ୍ତିଙ୍କ ହୃଦୟରେ ଅଗ୍ନି ସଂଯୋଗ କରୁଥିଲା । ବଳିଷ୍ଠ ଚିନ୍ତାଧାରା, ଅକାଟ୍ୟ ଯୁକ୍ତି ଓ ଅଗ୍ନିମୟୀ ଭାଷାର ସଂଯୋଗରେ "ପ୍ରାଚୀ"ରେ ସୃଷ୍ଟି ହେଉଥିଲା

ଜାତୀୟତାର ଏକ ଉଦ୍‌ବେଳ "ପ୍ରୟାଗ" । ଶେଷରେ ଉତ୍କଳବାସୀଙ୍କର ବିରାଟ ଆନ୍ଦୋଳନ ସଫଳ ହେଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନପାଇଁ ବ୍ରିଟିଶ ସରକାର ସ୍ୱୀକୃତି ଦେଲେ । ସ୍ୱୀୟ ପ୍ରଚେଷ୍ଟାରେ ସାଫଲ୍ୟଶ୍ରୀ-ମଣ୍ଡିତ ହୋଇ ଗୁରୁଦେବ ତତ୍କାଳୀନ "ପ୍ରାଚୀ"ରେ ଲେଖିଥିଲେ— " The Oriya Nation expresses its profound gratitude to the British Government for their recognition at long last of the claim of the Oriyas to their separate political existence. We are vowed to reach the goal of the Greater Orissa, every inch whereof is as dear to us as our life-breath."

"ପ୍ରାଚୀ" ପତ୍ରିକା ସେତେବେଳେ ଦେଶ-ବିଦେଶରେ ଅଶେଷ ଖ୍ୟାତି ଅର୍ଜ୍ଜନ କରିଥିଲା, ପଣ୍ଡିତ ଜବାହରଲାଲ ନେହେରୁ ଆଦି ବହୁ ବିଶିଷ୍ଟ ନେତା ଏହି ପତ୍ରିକା ଆଗ୍ରହର ସହ ପାଠ କରି ଏହାର ସଫଳତା ନିମନ୍ତେ ଶୁଭକାମନା ପ୍ରକାଶ କରିଥିଲେ ।

ଏହିପରି ଜାତୀୟତାପାଇଁ ସବୁ କ୍ଷେତ୍ରରେ ନିର୍ଭୀକ ଭାବରେ ସଂଗ୍ରାମ କରି ଗୁରୁଦେବ ଶେଷକୁ ଗଢ଼ିଥିଲେ ତାଙ୍କର ପ୍ରିୟତମ ଅନୁଷ୍ଠାନ "କଳିଙ୍ଗ-ଭାରତୀ" ଓ "ଉତ୍କଳ-ଯୁବ-ସାହିତ୍ୟ-ସମାଜ" । ସାହିତ୍ୟପାଇଁ ତାଙ୍କ ସଂଗ୍ରାମର ବିଜୟଫଳକ ଥିଲା ଏହି ଅନୁଷ୍ଠାନଦ୍ୱୟ । ବର୍ତ୍ତମାନ ଉତ୍କଳରେ ସବୁଠି ମହାଡ଼ମ୍ବରରେ ପାଳିତ ହେଉଥିବା "ଭଞ୍ଜଜୟନ୍ତୀ" ତାଙ୍କ ମସ୍ତକର ବିଜୟ-ଟୀକା ଥିଲା । ଜାତୀୟ କୃଷ୍ଟିର ଶ୍ରେଷ୍ଠ ପ୍ରତିନିଧି ଉପେନ୍ଦ୍ରଭଞ୍ଜଙ୍କର ଜୟନ୍ତୀ ପାଳନ ମାଧ୍ୟମରେ ଉତ୍କଳରେ ଜାତୀୟତାର ବନ୍ୟା-ପ୍ରବାହ ସୃଷ୍ଟି କରିବାକୁ ସେ 'ଭଞ୍ଜଜୟନ୍ତୀ ଆନ୍ଦୋଳନ' ଆରମ୍ଭ କରିଥିଲେ । ତତ୍‌ସଙ୍ଗେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତରେ ଉତ୍କଳୀୟ କୃଷ୍ଟି ଯେପରି ରୂପ ପାଇଛି ତାହା ଅନବଦ୍ୟ ବୋଲି ଘୋଷଣା କରି ସେ ଏସବୁର ବହୁଳ ପ୍ରଚାର ମଧ୍ୟ ଆରମ୍ଭ କରିଥିଲେ । ତାଙ୍କର ସେ ଉଦ୍ୟମ ଆଜି ଅନେକାଂଶରେ ବିଜୟ-ଶ୍ରୀମଣ୍ଡିତ । ଯେଉଁମାନେ ତାଙ୍କର ଏସବୁ ପ୍ରଚେଷ୍ଟାର ପ୍ରାକ୍‌କାଳରେ ତାଙ୍କୁ ଉପହାସ କରୁଥିଲେ, ଆଜି ସେମାନେ ସେ ପ୍ରଚେଷ୍ଟାର ଫଳକୁ ସମାଦର କରୁଛନ୍ତି । ଆଜି ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତ ସମାଜରେ ତାର ଯଥା ପୂଜା ଲାଭ କରିଛି । କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ ଜାତିର ହୃଦୟ-ସିଂହାସନରେ ଅଧିଷ୍ଠିତ ହୋଇଛନ୍ତି । ଏସବୁପାଇଁ ଗୁରୁଦେବଙ୍କୁ ଯେଉଁ ବିପୁଳ ସଂଗ୍ରାମ କରିବାକୁ ପଡ଼ିଥିଲା ତାହା ଏବେ ମଧ୍ୟ ଉତ୍କଳବାସୀଙ୍କ ମାନସପଟରେ ଜୀବନ୍ତ ହୋଇ ରହିଅଛି । ବହୁ ସାହିତ୍ୟିକଙ୍କ ନାସାକୁଞ୍ଚନ ଓ ଅପ୍ରୀତିଭାଜନତାକୁ ଲଲାଟର ଟୀକା କରି ଗୁରୁଦେବ ସାରା ଜୀବନ ଯେପରି ଅଜସ୍ରଭାବରେ ସଂଗ୍ରାମ କରିଆସିଛନ୍ତି, ତାହା ଓଡ଼ିଆ ସାହିତ୍ୟର ଇତିହାସରେ ଏକ ବୈପ୍ଳବିକ ଅଧ୍ୟାୟରୂପେ ଲିପିବଦ୍ଧ ରହିବ ।

୧୯୬୧ ମସିହା ଜାନୁୟାରୀ ୧୪ ତାରିଖ ରାତିର ସେ ଶତାନଳ ଲିଭି ଲିଭି ଆସୁଥିଲା । ଗୁରୁଦେବଙ୍କର ମର ଶରୀରକୁ ନିଷ୍ପ୍ରଭ କରି ଅଗ୍ନି ପ୍ରଶମିତ ହୋଇ ଯାଉଥିଲା । ବ୍ୟଥାକୁଳ ପ୍ରିୟଜନବୃନ୍ଦ ଶଯ୍ୟାପାଖରେ ଘେରିରହିଥିଲେ । ଅନ୍ତରର ଗଭୀର ବେଦନା ଓ ଭାବୋଚ୍ଛ୍ୱାସ ନିକଟରେ ଭାଷାର ଦାରିଦ୍ର୍ୟ ସମସ୍ତଙ୍କୁ ନୀରବ କରି ଦେଇଥିଲା । ମୁହଁରେ ଭାଷା ନ ଥିଲେ ବି ସମସ୍ତଙ୍କ ମନ ରାଜ୍ୟରେ ଉଠୁଥିଲା ଆଶା ଓ ଆଶଙ୍କାର ଏକ ବିରାଟ ଆନ୍ଦୋଳନ । ସେ ଆନ୍ଦୋଳନରେ ଭାସିବୁଲୁଥିଲା ଗୋଟିଏ ମାତ୍ର ପ୍ରଶ୍ନବାଚୀ "ସତେ କ'ଣ ବିଚ୍ଛନ୍ଦବାବୁଙ୍କର ସେ ସଂଗ୍ରାମ ଏହିଠାରେ ଶେଷ ହେଲା ??"



# ଶ୍ରାଦ୍ଧ-ବାସରେ

## ଶ୍ରୀ ସୁରେଶଚନ୍ଦ୍ର ନନ୍ଦ

( ଗ୍ରାମ—ଖଣ୍ଡ ଲୁମ୍ବକାମୋଦା )

ଭଞ୍ଜ-ପଦ-କଞ୍ଜ-    ମିଳନ୍ଦ - ସ୍ୱଚ୍ଛନ୍ଦ    ସ୍ୱଚ୍ଛନ୍ଦ କବି !
ହରାଇଲ୍ ବର୍ଷେ    ହେଲା ମୋ ଜନନୀ    ତବ ସୁଛବି ।
ଏହି ମାଘ ମାସେ    କୃଷୀ କରୁଥିଲ    ଧାନ ଅମଳ,
ପାଇଥିଲ ଭଞ୍ଜ-    ଗୀତେ ତୁମଠୁଁ ଯେ    ପ୍ରେରଣା ବଳ ।
ସ୍ନେହର ମଳୟର    ମଧୁର ପରଶେ    'ମଧୁ'ର ଦୂତ,
ପୁଲକିତ ପ୍ରାଣେ    ପଢୁଥିଲ ପଦେ    ପଞ୍ଚମେ ଗୀତ ।
ବାସବ-ଭୁବନୁ    ବିବୁଧେ ସ୍ୱର୍ଲୋକ    ବସି ଆନନ୍ଦେ,
ନନ୍ଦନ ଶ୍ରୀବୃଦ୍ଧି    ପାଇଁ ହରିଲେ କି    ତୁମକୁ ଛନ୍ଦେ ।

ଧରାଧାମେ ସିନା    ବନପ୍ରିୟ ବାଣୀ    ଶ୍ରୁତି ମଧୁର,
ନନ୍ଦନକାନନେ    ଯୋଗ୍ୟ ଗ୍ରାମ-ଯଶ-    ଗାୟକ - ବର ।
ଅବା ଏ ଅସାର    ସଂସାରେ ଯେଉଁଠି    ପାପର ବାସ,
ତବ ବାସପାଇଁ    ଅଯୋଗ୍ୟ ବୁଝିଲେ    ଜାନକୀ - ଈଶ !
ରତ୍ନ-ସିଂହାସନେ    ଥାପିଲେ ତୁମ୍ଭଙ୍କୁ    ଆପଣା ପାଶ,
ଜାଣିଶୁଣି ସୁଦ୍ଧା    'କଳିଙ୍ଗ- ଭାରତୀ'    ଶୋକେ ଅବଶ ।
ମର୍ତ୍ତ୍ୟବାସୀ ହେଲେ    ଦେବଦେବୀ ସୁଦ୍ଧା    ମା ନ ବ ପ ର,
ମାୟା-ମୋହ-ପାଶେ    ଆବଦ୍ଧ, ବିଚ୍ଛେଦେ    ହୁଅନ୍ତି ଝୁରି ।

ଉତ୍କଳ ଜନନୀ    କୋଳୁ ଏହିପରି    ଗଲେଣି ଚଳି
ଏକ ପରେ ଏକ    ଅନେକ ତାହାର    ନେତ୍ର - ପୁତ୍ତଳି ।
ହେ ଭଞ୍ଜରସିକ !    କାବ୍ୟ-ରସ ଏକା    ନ କର ପାନ,
ମାନବ-ଜାତିରେ    ପରଶିବାପାଇଁ    କଲ ସାଧନ ।
ଖଞ୍ଜତା, ଦାରିଦ୍ର୍ୟ    ତବ ଅଗ୍ରଗାମୀ-    ପଦେ ଶିକୁଳି—
ହୋଇ ନ ପାରିଲା;    ତୁଲିଲ କର୍ତ୍ତବ୍ୟ    ସ୍ୱପଦେ ଦଳି ।

ତୁମ ଯୋଗୁ ନାମ-　　ମହିମା ପ୍ରଚୁର　　ଜଗତ ଲୋକେ,
ପ୍ରଦୀପ ପ୍ରାୟେ ତା　　ପ୍ରାଣୀ-ହୃଦେ ପୁଣି　　ଦେଦୀପ୍ୟେ ଆଲୋକେ ।

ଭଞ୍ଜ - ଜୟନ୍ତୀର　　ଉତ୍ସବ ଗୌରବ　　ଯେତେ ବରଷ,
ସୀତାରାମ, ଭଞ୍ଜ　　ସହ ହେବ ତୁମେ　　ସର୍ବଜନମସ୍ୟ ।

ଜୀବନେ ଅମୂଲ୍ୟ　　ପ୍ରେରଣା ଲଭିଛି　　ତୁମଠୁଁ ମୁହିଁ,
ଏ ଜଗତେ ତାର　　ପ୍ରତିଦାନଯୋଗ୍ୟ　　କିଛି ମୋ ନାହିଁ ।

କେବଳ ଭକତି-　　କୁସୁମ ସିଞ୍ଚା ଯା　　ନୟନ - ନୀରେ,
ଅରପି ମୁଁ ତବ　　ଉଦ୍ଦେଶ୍ୟେ ପ୍ରଣମେ　　ଶ୍ରାଦ୍ଧ-ବାସରେ ।

ଭକତ-କବି ହେ !　　ଆମପାଇଁ ପ୍ରଭୁ-　　ପଦେ ଜଣାଣ,
କରୁଥିବ ସଦା　　ଓଡ଼ିଆ ଭାଇଙ୍କୁ　　ଦେବେ ସେ ଜ୍ଞାନ ।
" ସବୁ ଅସମ୍ଭବ　　ଜାତିସ୍ୱ ସାହିତ୍ୟ　　ଉନ୍ନତି ବିନା,"
ଓଡ଼ିଆ ଭାଇଏ　　ମହାଶିକ୍ଷା ଗୋଟି　　କରନ୍ତୁ ଧେନା ।

ପୁରୁଷୋତ୍ତମଙ୍କ　　ଆଶୀର୍ବାଦପୂତ　　ପୁରୁଷୋତ୍ତମ,
ସୁଯୋଗ୍ୟ ଦାୟାଦ　　ହୋଇ ତବ ରଖୁ　　ଜଗତେ ନାମ ।



# କବି ବିଚ୍ଛନ୍ଦଚରଣ

ଶ୍ରୀ ମୁରାରିମୋହନ ଜେନା

ଓଡ଼ିଶାର ଅନ୍ୟତମ ପ୍ରାଚୀନପନ୍ଥୀ କବି ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କର ଗତ ୧୯୭୧ ମସିହା ଜାନୁଆରୀ ୧୪ ତାରିଖ ଦିନ କଟକ ବଡ଼ ଡାକ୍ତରଖାନାରେ ଦେହାନ୍ତ ହୋଇଯାଇଛି । ସେ ଆଜକୁ ବହୁଦିନଧରି ମେଡ଼ିକାଲରେ ଶଯ୍ୟାଶାୟୀ ଥିଲେ । ତାଙ୍କର ଏ ଯେ ଶେଷ ଶଯ୍ୟା ହେବ, ତାହା ହୁଏତ କେହି କଳ୍ପନା କରି ନ ଥିଲେ । କିନ୍ତୁ ବିଧିର ବିଧାନ ଅଲଙ୍ଘ୍ୟ । ସେ ଆମକୁ ଛାଡ଼ି ଚାଲିଗଲେ । ତାଙ୍କର ଏ ତିରୋଧାନ ଦେଶ ଓ ଜାତିପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ । ତାଙ୍କର ଆତ୍ମୀୟ ସ୍ୱଜନ ପରିବାର ତାଙ୍କର ଏ ବିୟୋଗରେ ଯେ କି ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରୁଥିବେ, ତାହା ହୁଏତ ଭାଷାରେ ପ୍ରକାଶ କରିହେବ ନାହିଁ । ଶ୍ରୀଯୁକ୍ତ ପଟ୍ଟନାୟକ ଆଉ କେତେ ଦିନ ଆମଭିତରେ ବଞ୍ଚିରହିଥିଲେ, ଆମକୁ ଯାହା ଅଜଣା, ଅଶୁଣା ଓ ଅଦେଖା, ସେ ସାହିତ୍ୟ ମାଧ୍ୟମରେ ସେହି ପ୍ରାଚୀନ ସାହିତ୍ୟକୃତିଗୁଡ଼ିକୁ ଆମକୁ ଜଣାଇ-ଥାନ୍ତେ, ଶୁଣାଇଥାନ୍ତେ ଓ ଦେଖାଇଥାନ୍ତେ । ଆମର ଦୁର୍ଭାଗ୍ୟ, ସେ ଆମଠାରୁ ଅନ୍ତର ହେଲେ । ତାଙ୍କର ଏ ବିୟୋଗରେ ଏ ଜାତି ଅଶ୍ରୁତର୍ପଣ କରିବା ସଙ୍ଗେ ସଙ୍ଗେ ତାଙ୍କର ଯେଉଁ ଅପୂରଣୀୟ କାର୍ଯ୍ୟ ରହିଯାଇଛି, ତାହାକୁ ସର୍ବତୋଭାବେ ପୂରଣ କଲେ ତାଙ୍କର ଆତ୍ମା ଆହୁରି ଶାନ୍ତିରେ ରହିପାରିବ ବୋଲି ଦୃଢ଼ବିଶ୍ୱାସ ।

## ସଂକ୍ଷିପ୍ତ ଜୀବନୀ

କବି ବିଚ୍ଛନ୍ଦ ୧୯୦୧ ଜାନୁଆରୀ ୨୦ ତାରିଖରେ ପୁରୀ ଜିଲାର ଖୋର୍ଦ୍ଧା ସବ୍‌ଡ଼ିଭିଜନ ଅନ୍ତର୍ଗତ ପାଅଁଲା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଶ୍ରୀ ଗୋଲକକୃଷ୍ଣ ପଟ୍ଟନାୟକ ଓ ମାତାଙ୍କ ନାମ ରାଧାଦେବୀ । କବି ତାଙ୍କ ପିତାମାତାଙ୍କର ଦ୍ୱିତୀୟ ସନ୍ତାନ । କବି ୭୮ ବର୍ଷ ବୟସ ପର୍ଯ୍ୟନ୍ତ ସିଧା-ସଳଖ ଚାଲିପାରୁ ନ ଥିଲେ । ତେଣୁ ତାଙ୍କରଗୋଡ଼ ଦୁଇଟିକୁ ବାଲିଗାଡ଼ିରେ ଭର୍ତ୍ତି କରାଇ ସିଧାସଳଖ କରାଇବାରେ ଚେଷ୍ଟା କରାଯାଇଥିଲା ଓ କେତେକ ପରିମାଣରେ ତାହା ସଫଳକାମ ହୋଇଥିଲା । ଏ ବିକଳାଙ୍ଗ ଅଙ୍ଗରେ ମଧ୍ୟ ସେ ଶିକ୍ଷାପ୍ରତି ଗଭୀର ମନୋନିବେଶ କରିଥିଲେ । ୧୯୨୦ ମସିହାରେ ମାଟ୍ରିକୁଲେଶନ, ୧୯୨୭ ମସିହାରେ ବି. ଏ. ପାଶ୍ କରିଥିଲେ । ୧୯୪୧ ମସିହାରେ ବି. ଏଲ୍. ପାଶ୍ କରି କିଛି ଦିନ ଓକିଲାତି ବ୍ୟବସାୟ ମଧ୍ୟ କରିଥିଲେ । ୧୯୩୮ ମସିହାରେ ପୁରୀ ଜିଲାର ନେହମଣି ଦେବୀଙ୍କୁ ସେ ବିବାହ କରିଥିଲେ । ୧୯୪୨ ମସିହାରେ ଓକିଲାତି ବ୍ୟବସାୟ ତ୍ୟାଗ କରି ଓଡ଼ିଶା ସରକାରଙ୍କ ଆଡ଼ିସିନାଲ ଟ୍ରାନ୍‌ସଲେଟରରୂପେ ନିଯୁକ୍ତ ହେଲେ ଓ ତାପରେ ଓଡ଼ିଶା ସରକାରଙ୍କ ଲୋକସଂପର୍କ ବିଭାଗରେ ରାଇଟର୍ ଟ୍ରାନ୍‌ସଲେଟର ଓ ପ୍ରଡ଼କ୍‌ସନ ଅଫିସରରୂପେ ଜୀବନରେ ବହୁ ବର୍ଷପର୍ଯ୍ୟନ୍ତ ନିଯୁକ୍ତ ହୋଇଥିଲେ ଓ ସେ କାର୍ଯ୍ୟରୁ ଅବସର ଗ୍ରହଣ କରିବାପରେ ଓଡ଼ିଶା ସାହିତ୍ୟ ଏକାଡ଼େମୀରେ ରିସର୍ଚ୍ଚ ଆସିଷ୍ଟାଣ୍ଟରୂପେ ନିଯୁକ୍ତି ପାଇ କାର୍ଯ୍ୟ କରୁଥିଲେ ।

## ସାହିତ୍ୟପ୍ରତି ଅନୁରାଗ

ଖୁବ ଅଳ୍ପ ବୟସରୁ ସାହିତ୍ୟପ୍ରତି ତାଙ୍କର ଅନୁରାଗ ଫୁଟିଉଠିଥିଲା । ସେ ସେହି ଅଳ୍ପ ବୟସରୁ ହିଁ ବିଭିନ୍ନ କାବ୍ୟକବିତା ଲେଖିପାରୁଥିଲେ । ଏହି କାବ୍ୟକବିତା ଲେଖା ତାଙ୍କର ଉତ୍ତର-ଜୀବନରେ

ତାଙ୍କୁ ଏକ ଶ୍ରେଷ୍ଠ କବିର ଆସନ ପ୍ରଦାନ କଲା ଓ ସେ ଏ ସାହିତ୍ୟର ଜଣେ ବିଶିଷ୍ଟ ସାଧକରୂପେ ଆମ ଆଗରେ ବିବେଚିତ ହେଲେ ।

## ଇଂରାଜୀ ଲେଖାରେ ଧୁରନ୍ଧର

ଓଡ଼ିଆ ଭାଷା-ସାହିତ୍ୟ ଗବେଷଣା ଓ ସୃଷ୍ଟିରେ ବିଶେଷ ଅନୁରାଗ ଛଡ଼ା ଇଂରାଜୀ ଲେଖାରେ କବିଙ୍କର ବିଶେଷ ଦକ୍ଷତା ଥିଲା । ସେ ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କ ଇଂରାଜୀଲେଖାର ଶୈଳୀ ତତ୍‌କାଳୀନ ବହୁ ଗୁରୁଜନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ଓ ନିଜେ କବି ବି.ଏ. ଶ୍ରେଣୀର ଛାତ୍ର ଥିବାସମୟରେ ଜଣେ ବି.ଏ. ଇଂରାଜୀ ଅନର୍ସ ଛାତ୍ରର ଇଂରାଜୀ ଗୃହଶିକ୍ଷକରୂପେ ନିଯୁକ୍ତ ହୋଇଥିଲେ । ପୁଣି ତାଙ୍କର ଇଂରାଜୀଲେଖାର ଦକ୍ଷତାଯୋଗୁଁ ସେ ୧୯୩୧ ମସିହାରେ 'ପ୍ରାଚୀ' ଇଂରାଜୀ ପତ୍ରିକାର ସମ୍ପାଦକ ଓ ୧୯୩୪ମସିହାରେ ଇଂରାଜୀ "ବୈତରଣୀ" ଏବଂ "ଓଡ଼ିଆ ଏକାଡ଼େମୀ ଜର୍ଣ୍ଣାଲ"ର ସହ-ସମ୍ପାଦକ ହୋଇଥିଲେ । କବି ଇଂରାଜୀ "ପ୍ରାଚୀ" ପତ୍ରିକାର ସମ୍ପାଦକ ଥିଲାବେଳେ ବହୁ ପ୍ରାଚୀନ କବିଙ୍କର ଚମତ୍କାର କବିତାଗୁଡ଼ିକ ଇଂରାଜୀରେ ଅନୁବାଦ କରି ଅନ୍ୟ ଭାଷାଭାଷୀଙ୍କ ଆଗରେ ଏ ଦେଶର ଗୌରବମୟ ସାଂସ୍କୃତିକ ଓ ସାହିତ୍ୟିକ ପରମ୍ପରାକୁ ଦେଖାଇବାକୁ ଚେଷ୍ଟା କରିଥିଲେ । ତାଙ୍କର ଏପ୍ରକାର ପ୍ରଚେଷ୍ଟା ଓଡ଼ିଆ ସାହିତ୍ୟରେ ଅନନ୍ୟସାଧାରଣ ଓ ଅପ୍ରତିଦ୍ୱନ୍ଦ୍ୱୀ କହିଲେ ଚଳେ । ପ୍ରାଚୀ ସମିତି ତ୍ୟାଗ କଲାପରେ ତାଙ୍କର ପରଜୀବନରେ ସେ ଉପେନ୍ଦ୍ର ଭଞ୍ଜଙ୍କ କେତୋଟି ଚମତ୍କାର କବିତା ଅନୁବାଦ କରି ଏକ ପୁସ୍ତକ "Upendrabhanja Souvenir" ନାମରେ ପ୍ରକାଶ କରିଛନ୍ତି ଓ କବିସୂର୍ଯ୍ୟଙ୍କ କେତେକ କବିତା ଅନୁବାଦ କରି "Glimpses in to Kavisurya" ମଧ୍ୟ ପ୍ରଣୟନ କରିଛନ୍ତି । ଏହାଛଡ଼ା "Kalinga, Kabisamrat, Kalinga-Bharati" ତାଙ୍କର ମଧ୍ୟ ଅନ୍ୟ ଏକ ଇଂରାଜୀ ଅବଦାନ ।

## ପ୍ରାଚୀନ ପୋଥିର ସଂଗ୍ରାହକ ଓ ସମ୍ପାଦକ

କବି ଶ୍ରୀ ପଟ୍ଟନାୟକ ତାଙ୍କ ଜୀବନକାଳ ମଧ୍ୟରେ ଅସଂଖ୍ୟ ପୋଥି ସଂଗ୍ରହ ଓ ସମ୍ପାଦନ କରିଛନ୍ତି । ଏ ସମସ୍ତ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଉଦ୍ଧାରରେ ବିଶେଷ ସହାୟକ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ତାଙ୍କର ବଳିଷ୍ଠ ପ୍ରଯତ୍ନରେ ବହୁ ପ୍ରାଚୀନ ବିସ୍ମୃତ କବି ଆଜି ଲୋକଲୋଚନକୁ ଆସିପାରିଛନ୍ତି । "ଶଶୀରେଖା" ଓ "ରତ୍ନଭିରା ମଧୁଚକ୍ର" ତାଙ୍କଦ୍ୱାରା ସୁସମ୍ପାଦିତ । ପ୍ରାଚୀନ କବି ଗୌରଚରଣ ଅଧିକାରୀଙ୍କ ସମସ୍ତ କବିତାଗୁଡ଼ିକ ଏକତ୍ର କରି ସେ ତାଙ୍କର ସମ୍ପାଦକତ୍ୱରେ 'ଗୌରଚରଣ ପଦ୍ୟାବଳୀ' ପ୍ରକାଶ କରିଛନ୍ତି । ଭକ୍ତକବି ଦୀନକୃଷ୍ଣଙ୍କ ବହୁ ସରଳ, ତରଳ ଓ ସୁଲଳିତ କବିତା ରାଜି ତାଙ୍କର ଉଦ୍ୟମରେ ଆଜି ଆମଆଗରେ ପ୍ରତିଭାତ ହେଉଛି । ଏହାଛଡ଼ା ମୋ ଜାଣିବାରେ ବହୁ ପୋଥି ତାଙ୍କର କଳିଙ୍ଗ-ଭାରତୀ ଭବନରେ ଗଚ୍ଛିତ ଅଛି । ସେସବୁ ଆମର ଜାତୀୟ ସମ୍ପଦ । ଓଡ଼ିଶା ସରକାର ଓଡ଼ିଶା ସାହିତ୍ୟ ଏକାଡ଼େମୀ ଜରିଆରେ ସେସବୁର ପ୍ରକାଶ ଓ ପ୍ରଚାର କରାଇପାରିଲେ ଆମ ପ୍ରାଚୀନ ସାହିତ୍ୟର ଆହୁରି ଅଭିବୃଦ୍ଧି ସାଧିତ ହୋଇପାରନ୍ତା ।

## ଭାଷାକୋଷର ସହଯୋଗୀ

ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷର ସହଯୋଗୀ କର୍ମୀ ହିସାବରେ ୧୯୩୪ ମସିହାରେ କବି ପଟ୍ଟନାୟକ ନିଜକୁ ନିୟୋଜିତ କରି ଭାଷାକୋଷ-କାର୍ଯ୍ୟରେ ପ୍ରହରାଜ ମହାଶୟଙ୍କୁ ବିଶେଷ ସାହାଯ୍ୟ କରିଥିଲେ ।

## ସାହିତ୍ୟ-ସମାଜ ସମ୍ପାଦକ

୧୯୩୬ ମସିହାରୁ ୧୯୪୮ ମସିହାପର୍ଯ୍ୟନ୍ତ ଦୀର୍ଘ ବାରବର୍ଷଧରି ସେ ଓଡ଼ିଶାର ବୃହତ୍ ସାହିତ୍ୟ ଅନୁଷ୍ଠାନ ଉତ୍କଳ-ସାହିତ୍ୟ-ସମାଜର ସହକାରୀ ସମ୍ପାଦକ ଓ ସମ୍ପାଦକ ରହିଥିଲେ । ଏହି କାର୍ଯ୍ୟକାଳ

ମଧ୍ୟରେ ସେ ସାହିତ୍ୟର ବିଭିନ୍ନ ଦିଗ ଆଲୋଚନା କରିବାରେ ମନୋନିବେଶ କରିଥିଲେ ଓ ପ୍ରାଚୀନ କବିମାନଙ୍କର କୃତିଗୁଡ଼ିକୁ ଜନସମାଜରେ ପ୍ରଚାର କରାଇବାରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

## "ଉତ୍କଳ-ଛାତ୍ର-ସାହିତ୍ୟ-ସମାଜ" ଓ "କଳିଙ୍ଗ-ଭାରତୀ"ର ପ୍ରତିଷ୍ଠାତା

ସେ ୧୯୪୩ ମସିହାରେ 'ଉତ୍କଳ-ଛାତ୍ର-ସାହିତ୍ୟ-ସମାଜ' ଓ ୧୯୪୫ ମସିହାରେ "କଳିଙ୍ଗଭାରତୀ" ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ତାଙ୍କର ଏ ଦୁଇଟି ଅନୁଷ୍ଠାନ ପ୍ରତିଷ୍ଠା କରିବା ମୂଳରେ ଲକ୍ଷ୍ୟ ଥିଲା ପ୍ରାଚୀନ ସାହିତ୍ୟର ଉଦ୍ଧାର, ପ୍ରଚାର ଓ ଦେଶର ଭବିଷ୍ୟତ ନାଗରିକ ଛାତ୍ର-ସମାଜକୁ ପ୍ରାଚୀନ ସାହିତ୍ୟ-ପ୍ରତି ଆକୃଷ୍ଟ କରାଇ ସେହି ପ୍ରାଚୀନ ରାଗରାଗିଣୀ ସମ୍ବଳିତ ଧାରାରେ ସାହିତ୍ୟ ସୃଷ୍ଟି କରିବା ।

## ଭଞ୍ଜଙ୍କ ପ୍ରଚାରକ ଓ ଗବେଷକ

ସାଧାରଣତଃ ବିଚ୍ଛନ୍ଦ ପଟ୍ଟନାୟକଙ୍କ ନାଁ ଶୁଣିଲେ ଆମର ସାହିତ୍ୟପ୍ରେମୀ ଜନସାଧାରଣ କହିଥାଆନ୍ତି— "ବିଚ୍ଛନ୍ଦବାବୁ ହେଉଛନ୍ତି ଭଞ୍ଜ-ପାଗଳ ।" ଏ କଥା ନିରାଟ ସତ୍ୟ । ଭଞ୍ଜ-ସାହିତ୍ୟକୁ ଚନ୍ନ ଚନ୍ନ ପଢ଼ିତାକୁ ଲୋକଙ୍କ ଆଗରେ ବୁଝେଇ ସୁଝେଇ ମାଧ୍ୟମରେ ଅର୍ଥାତ୍ "ଭଞ୍ଜ-ଜୟନ୍ତୀ" ମାଧ୍ୟମରେ ପ୍ରଚାର ଓ ପ୍ରସାର କରାଇବାରେ ବିଚ୍ଛନ୍ଦବାବୁ ଏ ଜାତିରେ ଓ ମାଟିରେ ସ୍ମରଣୀୟ । ତାଙ୍କର ବଳିଷ୍ଠ ସମ୍ପାଦନାରେ 'ଭଞ୍ଜପ୍ରଭା'ର ପ୍ରକାଶ ଭଞ୍ଜ-ସାହିତ୍ୟର ବହୁମୁଖୀ ପ୍ରତିଭା ଉଦ୍‌ଘାଟନ କରେ । ଭଞ୍ଜ-ସାହିତ୍ୟର ଜଣେ ଗବେଷକ ହିସାବରେ ମଧ୍ୟ ସେ ଏ ଜାତିରୁ ବିସ୍ମୃତ ହେବେ ନାହିଁ ।

## "କବିତା କୁମୁଦ" ଓ "ଶତପତ୍ର"ର କବି

କବି ନିଜର କୃତିମାନଙ୍କ ମଧ୍ୟରେ 'କବିତା କୁମୁଦ' ଓ 'ଶତପତ୍ର' ଆମ ଆଗରେ ଉପସ୍ଥାପିତ କରି ଯାଇଛନ୍ତି । 'କବିତା-କୁମୁଦ' ୧୦୧ ଗୋଟି କବିତାର ସମାବେଶ । ଏଥିରେ କବି ବିଭିନ୍ନ ପ୍ରାଚୀନ ରାଗ-ରାଗିଣୀ ଜରିଆରେ କବିତାଗୁଡ଼ିକ ରଚନା କରିଛନ୍ତି ଓ 'ଶତପତ୍ର'ରେ ଶହେଟି ପ୍ରେମ-କବିତା ପ୍ରାଚୀନ ଶୈଳୀରେ ରଚନା କରିଛନ୍ତି । 'ଶତପତ୍ର' ହେଉଛି ପ୍ରେମିକ-ପ୍ରେମିକାଙ୍କ ମଧ୍ୟରେ ପତ୍ର-ବିନିମୟ ।

## ଅନ୍ୟାନ୍ୟ କୃତି

ଏହାଛଡ଼ା କବି ବିଚ୍ଛନ୍ଦଙ୍କର କୃତିଗୁଡ଼ିକ ହେଲା "ଆଦ୍ୟ ଅର୍ଘ୍ୟ" (କବିତା ସଙ୍କଳନ), 'କବିସମ୍ରାଟ ସ୍ମରଣିକା' (ସମାଲୋଚନା), "ଶ୍ରୀଶ୍ରୀଜଗନ୍ନାଥ ଜଣାଣ ଭଜନ" "ଓଡ଼ିଆ ସାହିତ୍ୟର ଇତିହାସ" ଓ "ଭାବନା-ଭାବନା" (କବିତା) । ଏମଧ୍ୟରୁ ଭାବନା-ଭାବନା କବିଙ୍କର ଶେଷ କୃତି । ତାଙ୍କର 'ବିନୟ ପତ୍ରିକା'ର ଓଡ଼ିଆ ଅନୁବାଦ ଓ ନବାକ୍ଷରୀ ବୃତ୍ତରେ "ବିଚ୍ଛନ୍ଦକୃତ ତୁଳସୀ ରାମାୟଣ" ଏପର୍ଯ୍ୟନ୍ତ ଅପ୍ରକାଶିତ ଅବସ୍ଥାରେ ରହିଛି । ନିକଟ ଭବିଷ୍ୟତରେ ଏ ପୁସ୍ତକ ପ୍ରକାଶିତ ହେଲେ ତାଙ୍କର ଭକ୍ତିଦଦଗତ ପ୍ରାଣର ସ୍ପଷ୍ଟ ପରିଚୟ ମିଳିପାରିବ ।

ତାଙ୍କର ବହୁ ଅପ୍ରକାଶିତ ଲେଖା ଏବେ ମଧ୍ୟ ରହିଛି । ସେସବୁକୁ ପ୍ରକାଶ କରାଇବାରେ ପ୍ରତ୍ୟେକ ସାହିତ୍ୟପ୍ରେମୀ, ସାହିତ୍ୟିକ, ସାହିତ୍ୟ-ଅନୁଷ୍ଠାନମାନେ ଉଦ୍ୟମଶୀଳ ହେବା ଏକାନ୍ତ ବାଞ୍ଛନୀୟ ।



# ସ୍ୱର୍ଗତ ବଞ୍ଛନିଧିଚରଣ

ବଞ୍ଛନିଧିବାବୁ ମେଧାବୀ ଛାତ୍ର ଥିଲେ, କିନ୍ତୁ ତାଙ୍କର ଆକର୍ଷଣ ଥିଲା ଇଂରେଜୀପ୍ରତି । ସେ କଲେଜରେ ବି.ଏ. ପଢ଼ୁଥିବାବେଳେ ତାଙ୍କଠାରୁ ଶୁଣିଛି ( ଓ ତାଙ୍କ କଥାର ପ୍ରମାଣ ବି ପାଇଛି) । ସେ କାଳର ପ୍ରତିଷ୍ଠିତ ପ୍ରତ୍ୟେକ ଇଂରେଜ କବି, ଔପନ୍ୟାସିକ ଓ ନାଟକ-ଲେଖକଙ୍କର କୃତି ସେ ପଢ଼ିଥିଲେ । ସେକ୍‌ସ୍‌ପୀଅରଙ୍କ ଏକାଧିକ ନାଟକର ପୃଷ୍ଠା ପୃଷ୍ଠା ସେ ମୁଖସ୍ଥ କରିଥିଲେ ଓ ଅବସରସମୟରେ ତାହାର ଆବୃତ୍ତି କରି ସହପାଠୀମାନଙ୍କୁ ମୁଗ୍‌ଧ କରୁଥିଲେ । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରେରଣାରେ ତାଙ୍କର ଓଡ଼ିଆ ସାହିତ୍ୟ, ବିଶେଷ କରି ପୁରୁଣା ଓଡ଼ିଆ ସାହିତ୍ୟପ୍ରତି ଅନୁରାଗ ଜାତ ହେଲା । ସେଇକାଳରୁ ମୃତ୍ୟୁ-ଦିବସପର୍ଯ୍ୟନ୍ତ ଏ ଅନୁରାଗ ଉତ୍ତରୋତ୍ତର ବଢ଼ିଛି ପଛେ କମିନାହିଁ । ସରକାରୀକାର୍ଯ୍ୟରୁ ଅବସର ନେବାପରେ ସମସ୍ତ ସମୟ ତାଙ୍କର ଶ୍ରେଷ୍ଠ କାର୍ଯ୍ୟରେ ଲଗାଇବାକୁ ସେ ଆରମ୍ଭ କଲାବେଳକୁ ରୋଗରେ ପଡ଼ି ଶେଷରେ ଚାଲିଗଲେ—ବିଶେଷ କ୍ଷୋଭର ବିଷୟ । ସ୍ୱର୍ଗତ ବଞ୍ଛନିଧିଚରଣ ଆଜନ୍ମ ଖଞ୍ଜ; ପୂର୍ଣ୍ଣଯୌବନରେ ମଧ୍ୟ ବିନା ଅବଲମ୍ବନରେ ୧୦।୧୫ ହାତରୁ ବେଶୀ ଚାଲିପାରନ୍ତି ନାହିଁ । ଏ ଶାରୀରିକ ଅସାମର୍ଥ୍ୟ ସାଙ୍ଗକୁ ଥିଲା ଉତ୍କଟ ଅଭାବ, ଯାହାର ତାଡ଼ନାରେ ତାଙ୍କୁ ମଧ୍ୟବୟସରେ ନୌକରୀ କରିବାକୁ ହୋଇଥିଲା । ଏ ସମସ୍ତ ସତ୍ତ୍ୱେ ବଞ୍ଛନିଧିବାବୁ କି ଅସାଧ୍ୟ ସାଧନ କରି ନାହାନ୍ତି ! ସେ ଯେତେବେଳେ ମଧ୍ୟଯୁଗର ଓଡ଼ିଆ କବିମାନଙ୍କ କୃତି, ବିଶେଷକରି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ବଳୀର 'ପୁନରୁତ୍‌ଥାନ' ଆରମ୍ଭ କଲେ, ସେତେବେଳେ ତାଙ୍କର ସମର୍ଥକସଂଖ୍ୟା ଆଙ୍ଗୁଠି ଅଗରେ ଗଣି ହେବ; ନିନ୍ଦୁକଙ୍କ ସଂଖ୍ୟା ଅକଳନୀୟ । ତଥାପି ଖଞ୍ଜ, ଦରିଦ୍ର ବଞ୍ଛନିଧି ଦବିଲେ ନାହିଁ; ଦବିଲେ ନାହିଁ ବୋଲି ଆଜି ଭଞ୍ଜଜୟନ୍ତୀ ଦେଶର ସାଂସ୍କୃତିକ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇରହିଛି ଓ "କଳିଙ୍ଗ-ଭାରତୀ"ର ପ୍ରତିଷ୍ଠାତାଙ୍କ ଅନ୍ତେ ବହୁବର୍ଷ ନିଶ୍ଚୟ ଜୀଇଁରହିବ । ବଞ୍ଛନିଧିବାବୁଙ୍କ ମନର ବଳ ଆମ ଯୁବକମାନଙ୍କର ସମ୍ବଳ ହେଉ ।

( **ପଞ୍ଚମ ବର୍ଷ ୧୦ମ ସଂଖ୍ୟା "ନବଜୀବନ"ର ସମ୍ବାଦ ଓ ସଙ୍କେତ ସ୍ତମ୍ଭରୁ** )

# କବି ବିଚ୍ଛନ୍ଦ

କବି ବିଚ୍ଛନ୍ଦ ସ୍ୱର୍ଗରେ । କିନ୍ତୁ କବି ବିଚ୍ଛନ୍ଦ "କଳିଙ୍ଗ-ଭାରତୀ" ପ୍ରତିଷ୍ଠାନରେ ବଞ୍ଚିରହି ନାହାନ୍ତି—ରହିବେ ନାହିଁ । ବିଚ୍ଛନ୍ଦ ସବୁ ସ୍ମୃତି-ସ୍ମାରକରେ ବଞ୍ଚିବାକୁ ଜନ୍ମ ହୁଅନ୍ତି ନାହିଁ । ଯେଉଁମାନେ ନିଜର ମାଂସ ହାଡ଼ରେ ଜାଳିପୁ ଜୀବନର ପଠତଳେ ଯାବଜ୍ଜୀବ ଗାଢ଼ ପୂର୍ତ୍ତି କରି ଗୁଳିଯାଆନ୍ତି, ସେମାନଙ୍କର ଜୀବନୀ ଓ ଇତିହାସ ଲେଖିବାର ପ୍ରୟାସ କେବଳ ବିଫଳତାର ପରିଣାମ କରିନେବା ହିଁ ସାର ହୋଇଥାଏ ।

ସେସମୟରେ ଉଚ୍ଚଶିକ୍ଷା ଲାଭ କରି ବହୁବ୍ୟକ୍ତି ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନକୁ ଜଳାଞ୍ଜଳି ଦେଇ ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ମାତ୍ର ସାହିତ୍ୟର ଉନ୍ନତିକଳ୍ପେ ଜାଣିଶୁଣି ଓଡ଼ିଶା ଦେଶରେ କବି-ଲେଖକର ଦୁର୍ଭାଗ୍ୟ ବରଣ କରିବାପାଇଁ—ଭବିଷ୍ୟତର ଚିନ୍ତା ନ କରି କେହି ଯଦି ସାହିତ୍ୟ-ପୀଠରେ ଆତ୍ମବଳି ଦେଇଥାଏ, ସେ ହେଉଛନ୍ତି ବିଚ୍ଛନ୍ଦଚରଣ । ସାହିତ୍ୟ-ଜଗତରେ ସେ ଅନ୍ୟତମ ଶହୀଦ ।

"ପ୍ରାଚୀ' ଆଜି ପାଶ୍ଚାତ୍ୟରେ ପରିଣତ ହୋଇଥାଇପାରେ; କିନ୍ତୁ ବିଚ୍ଛନ୍ଦଙ୍କ ବିଶେଷ ଛନ୍ଦର ଝଙ୍କାର ଓଡ଼ିଆ ସାହିତ୍ୟରେ କେବେହେଲେ ନିସ୍ତବ୍ଧ ହୋଇନାହିଁ । ନୂତନ ନିୟମରେ ନ ହେଲେହେଁ ନୂତନର ନିୟାମକଭାବରେ ତାଙ୍କର ଦୁର୍ଦ୍ଦମନୀୟ ସଂକଳ୍ପ କଳ୍ପେ କଳ୍ପେ ଜାତିର ସାହିତ୍ୟ ଓ ସଂସ୍କୃତିକୁ ଉଜ୍ଜୀବିତ କରିରଖିବ ।

**( ଚତୁର୍ବିଂଶ ବର୍ଷ, ଅଷ୍ଟମ ସଂଖ୍ୟା ଡଗରର ସାହିତ୍ୟ-ସଂସ୍କୃତି ବିଭାଗରୁ )**

# ସ୍ୱର୍ଗତ ବିଚ୍ଛନ୍ଦଚରଣ

ଗଭୀର ଦୁଃଖର ବିଷୟ ଯେ ଗତ ୧୪ ତାରିଖରେ କବି ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ବିୟୋଗ ହୋଇଯାଇଛି । କିଛିକାଳ ଦାରୁଣ ରୋଗକବଳରେ ପଡ଼ି ୬୦ ବର୍ଷ ବୟସରେ ତାଙ୍କ ଜୀବନର ଅବସାନ ଅତି ଶୋଚମୀୟଭାବରେ ଘଟିଲା । ବିଚ୍ଛନ୍ଦବାବୁ ସାମାଜିକ ଜୀବନରେ ଏବଂ ବିଶେଷକରି ସାହିତ୍ୟିକ-ମହଲରେ ସମସ୍ତଙ୍କର ଶ୍ରଦ୍ଧାଭାଜନ ଥିଲେ । ପ୍ରାଚୀନ ସାହିତ୍ୟପ୍ରତି ତାଙ୍କର ଯେପରି ଐକାନ୍ତିକ ନିଷ୍ଠା ଥିଲା, ତାହା ଅନନ୍ୟସାଧାରଣ । ସେ ନିଜେ ମଧ୍ୟ ପ୍ରାଚୀନ ଛାନ୍ଦ-ଧାରା ଛଡ଼ା ଅନ୍ୟ ଶୈଳୀରେ କବିତା ଲେଖି ନ ଥିଲେ । ଓଡ଼ିଆ ସାହିତ୍ୟର ପରମ୍ପରା ଅନୁଯାୟୀ ପ୍ରାଚୀନ ଛନ୍ଦଶାସ୍ତ୍ର ହିଁ କାବ୍ୟକବିତା ରଚନାର ମାଧ୍ୟମ ହେବା ଉଚିତ ବୋଲି ସେ ଦୃଢ଼ ମତ ପୋଷଣ କରି ତାହାର ପ୍ରଚଳନପାଇଁ "କଳିଙ୍ଗ-ଭାରତୀ" ଅନୁଷ୍ଠାନ ଏବଂ "ଭଞ୍ଜଜୟନ୍ତୀ" ଉତ୍ସବ ପରିଚାଳନା କରୁଥିଲେ । ଆଧୁନିକ କାବ୍ୟକବିତାର ଶୈଳୀପ୍ରତି ସେ ଅତି ଅସନ୍ତୁଷ୍ଟ ଥିଲେ । ଓଡ଼ିଆ ସାହିତ୍ୟର ଉନ୍ନତି ତାଙ୍କର ଆନ୍ତରିକ କାମନା ଥିଲା । ତାଙ୍କର ବିୟୋଗରେ ଓଡ଼ିଆ ସାହିତ୍ୟର ଜଣେ ନିଷ୍ଠାପର ସାଧକଙ୍କ ସ୍ଥାନ ଅପୂର୍ଣ୍ଣ ରହିଲା । ସେ ଯେଉଁ ଧାରାର ପ୍ରବର୍ତ୍ତନ ଲାଗି ଗଭୀର ପ୍ରଚେଷ୍ଟା ଚଳାଉଥିଲେ, ତାଙ୍କର ବିୟୋଗରେ ତାହାର ଅବସାନ ଘଟିଲା ବୋଲି ମନେହୁଏ । ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କ ଶୋକସନ୍ତପ୍ତ ପରିବାରଙ୍କପ୍ରତି ଆମେ ଗଭୀର ସମବେଦନା ପ୍ରକାଶ କରୁଛୁ ।

**( ୧୯୭୧ ଜାନୁଆରୀ ୧୫ ତାରିଖ "କଳିଙ୍ଗ"ର ସମ୍ପାଦକୀୟ ସ୍ତମ୍ଭରୁ )**

# କବି ବିଚ୍ଛନ୍ଦଚରଣଙ୍କ ଶେଷ କୃତ୍ୟ

କଟକ, ତା ୧୫।୧—ଓଡ଼ିଶାର ଅନ୍ୟତମ ପ୍ରାଚୀନପନ୍ଥୀ କବି ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କର ଗତ କାଲି ଅପରାହ୍ଣ ସାଢ଼େ ୩ ଘଣ୍ଟାରେ କଟକ ବଡ଼ ଡାକ୍ତରଖାନାରେ ପରଲୋକ ହୋଇଛି । ତାଙ୍କର ଏହି ମୃତ୍ୟୁସମ୍ବାଦ କଟକ ସହରରେ ଜଣାପଡ଼ିଲାପରେ କଟକର କେତେକ ସାହିତ୍ୟିକ ଓ ସାମ୍ବାଦିକ ମେଡ଼ିକାଲରେ ଉପସ୍ଥିତ ହୋଇଥିଲେ । ପ୍ରୋଡ଼କ୍ସନ ଅଫିସର ଶ୍ରୀ ପରମାନନ୍ଦ ମହାନ୍ତି, କଳିଙ୍ଗ ସମ୍ପାଦକ ଶ୍ରୀ ମନମୋହନ ମିଶ୍ର, ଉତ୍କଳ ସାହିତ୍ୟ ସମାଜର ଅନ୍ୟତମ ସମ୍ପାଦକ ଶ୍ରୀ ବିଚିତ୍ରାନନ୍ଦ କର, ଶ୍ରୀ ମୁରାରିମୋହନ ଜେନା, ଡାକ୍ତର ଶ୍ରୀମତୀ ସରସ୍ୱତୀ ଦେବୀ ପ୍ରମୁଖ ଓ ରାଷ୍ଟ୍ରଭାଷା ପ୍ରେସର ପରିଚାଳକବୃନ୍ଦ ଏଠାରେ ଉପସ୍ଥିତ ହୋଇ କବିଙ୍କୁ ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ ।

ପ୍ରାୟ ରାତି ସାଢ଼େ ୯ ଘଣ୍ଟା ସମୟରେ ତାଙ୍କୁ ଶବକୁ 'ସମାଜ' ଅନୁଷ୍ଠାନର ମଟର ଯୋଗେ ତାଙ୍କର ସାଧନାପୀଠ 'କଳିଙ୍ଗ-ଭାରତୀ' ଅନୁଷ୍ଠାନ ଡଗରପଡ଼ାକୁ ନିଆଯାଇଥିଲା । ବୈଦିକ ରୀତିରେ ସତୀଚଉରା ଶ୍ମଶାନରେ ଶବଦାହ କରାଯାଇଥିଲା ।

**ସମାଜ**

( ୧୫ । ୧ । ୧୯୭୧ )